

















## ସୂଚୀପତ୍ର



**SUBSCRIPTION**

**For USA and Canada**
**Single copy $2**
**Annual subscription $20**
***Remittances in favour of***
***Chandmama India Ltd.***
**to**
**Subscription Division**
CHANDAMAMA INDIA LIMITED
No. 82, Defence Officers Colony
Ekkatuthangal, Chennai - 600 097
E-mail : subscription@chandamama.org

**Gift Subscriptions**
**By Air Mail to All Countries**
**other than India**
**Twelve issues Rs. 900**
**Within India Rs. 120**
**by book post**
Send your remittances by Demand
Draft or Money Order favouring
'Chandama India Limited'

'ଭାରତ ବୀରପୁରୁଷ' ପହେଲି ପ୍ରତିଯୋଗିତା ରେ ଭାଗ ନିଅ ଓ ପ୍ରଚୁର ପୁରସ୍କାର ପାଅ

# ଭାରତର ବୀର ପୁରୁଷ-୭

ଭାରତର ଏକ ସଂଭ୍ରାନ୍ତ ସଂଗୀତ ପରମ୍ପରା ରହିଛି । ଏଠାରେ କେତକ ସଂଗୀତଜ୍ଞଙ୍କ ନାମ ଦିଆଯାଇଛି । ତୁମେ ସେମାନଙ୍କ ନାମ କହିପାରିବ ?

**ତିନିଜଣ ସଠିକ୍ ଉତ୍ତର ଦାତାଙ୍କୁ ମିଳିବ ବାଇସାଇକେଲ.***

**1** 'ଦିବ୍ୟ ସଂଗୀତ'ର ତ୍ରିମୂର୍ତ୍ତିଙ୍କ ମଧ୍ୟରୁ ସେ ଜଣେ ଯେ, ୨୪,୦୦୦ ସଂଗୀତ ରଚନା କରିଥିଲେ । ତାଙ୍କର ସମାଧି 'ତିରୁଭାୟାରୁ' ର, କାବେରୀକୂଳରେ ଅବସ୍ଥିତ । ତୁମେ ତାଙ୍କ ନାମ ଜାଣ କି ?

.....................................................................

**2** ଏହି କିମ୍ବଦନ୍ତୀୟ ତାବଲାବାଦକ ତାଙ୍କର ତାବଲା ବାଦନ ପାଇଁ ବିଖ୍ୟାତ ଅଟନ୍ତି । ତାଙ୍କର ପୁତ୍ର ଜାକିର ହୁସେନ୍ ମଧ୍ୟ ଜଣେ ବିଖ୍ୟାତ ତାବଲା ବାଦକ । ସେ କିଏ ?

.....................................................................



**3** ଏହି ସଂଗୀତଜ୍ଞ ଜଣକ ଆକବରଙ୍କ କୋର୍ଟରେ କାର୍ଯ୍ୟ କରୁଥିଲେ । ସେ ରାଗ ଦୀପକ ଗାନ କଲାବେଳେ ଦୀପ ଗୁଡିକ ଜଳି ଉଠୁଥିଲା । ସେ କିଏ ?

......................................

**4** ଏହି ପ୍ରସିଦ୍ଧ ସାହନାଇ ବାଦକ ତାଙ୍କର ବାଦ୍ୟ ସଂଗୀତ ପାଇଁ ଗତ ବର୍ଷ ଭାରତରତ୍ନ ପ୍ରାପ୍ତ ହୋଇଛନ୍ତି । ସେ କିଏ ?

......................................

**5** ସେ ଥିଲେ ଜଣେ ବିତ୍ତଶାଳୀ ବ୍ୟକ୍ତିତ୍ୱ । ନାଁ ତାଙ୍କର ଶ୍ରୀନିବାସ ନାୟକ, ଯେ ସଂସାର ତ୍ୟାଗ କରିଥିଲେ । ସେ 'ଦିବ୍ୟ ସଂଗୀତ'ର ସୂତ୍ରଧର । ତୁମେ ତାଙ୍କର ପ୍ରକୃତ ନାମ କହି ପାରିବ ?

......................................................

ପ୍ରତେକଟି ପ୍ରଶ୍ନର ସଠିକ୍ ଉତ୍ତର ସୁନ୍ଦର ଅକ୍ଷରରେ ଲେଖି ପଠାଇବେ । ଏହି ପାଞ୍ଚଜଣ ପ୍ରତିଭା ପୁରୁଷଙ୍କ ମଧ୍ୟରୁ କିଏ ତୁମର ପ୍ରିୟ ଓ କାହିଁକି ? 'ମୋର୍ ପ୍ରିୟ ପ୍ରତିଭା ପୁରୁଷ' ଦଶଟି ଶବ୍ଦରେ ଲେଖ ।

.....................................................................

.....................................................................

ପ୍ରତିଯୋଗୀଙ୍କ ନାମ: ..............................................

ବୟସ: ............................ଶ୍ରେଣୀ: ..........................

ଠିକଣା: .........................................................

.....................................................................

.....................................................................

ପିନ୍: ............................ଫୋନ୍: ..........................

ପ୍ରତିଯୋଗୀଙ୍କ ଦସ୍ତଖତ ........................................

ଅବିଭାବକଙ୍କ ଦସ୍ତଖତ ........................................

ଦୟାକରି ଏହି ପୃଷ୍ଠାଟିକୁ ଚିରି ନିମ୍ନ ଠିକଣାରେ ପଠାନ୍ତୁ:

**Heroes of India Quiz- 7**
CHANDAMAMA INDIA LIMITED
No. 82, Defence Officers Colony
Ekkatuthangal, Chennai - 600 097.
On/before **May 5, 2002**



**ବିଶେଷ ସୂଚନା**

୧. ଏହି ପ୍ରତିଯୋଗିତା ୮-୧୪ ବର୍ଷ ପିଲାଙ୍କ ପାଇଁ ଉଦ୍ଦିଷ୍ଟ ।
୨. *ତିନିଜଣ ସଠିକ୍ ଉତ୍ତର ଦାତାଙ୍କୁ ଜହ୍ନମାମୁର ସମସ୍ତ ସଂସ୍କରଣ ଭିତ୍ତିରେ ବଛାଯିବ । ଯଦି କେହି ପ୍ରତିଯୋଗୀ ମୋ ପ୍ରିୟ ବୀର ପୁରୁଷଙ୍କ ସମ୍ପର୍କରେ ଏକାଧିକ ପ୍ରବେଶିକା ପତ୍ର ପଠାଇଥାନ୍ତି ତେବେ ତାହା ସର୍ବୋତ୍ତମ ଉତ୍ତର ଭିତ୍ତିରେ ଗ୍ରହଣ କରାଯିବ ।
୩. ବିଚାରକ ମାନଙ୍କର ନିଷ୍ପତ୍ତି ଚୂଡାନ୍ତ ଅଟେ ।
୪. ଏହି ପ୍ରତିଯୋଗିତା ସମ୍ପର୍କରେ ଚିଠି ପତ୍ର ଗ୍ରହଣ ଯୋଗ୍ୟ ନୁହେଁ ।
୫. ବିଜେତା ମାନଙ୍କୁ ପତ୍ର ଦ୍ୱାରା ଜଣାଇ ଦିଆଯିବ ।

ସଂସ୍ଥାପକ
ବି. ନାଗି ରେଡ୍ଡି ଓ ଚକ୍ରପାଣି

# ମାଟି ମା'ର ମାସ

ଆମେ ସମସ୍ତେ ପୃଥିବୀପୃଷ୍ଠରେ ବାସ କରୁ ଓ ମାଟି ମା' ଆମକୁ ଦେଉଥିବା ଦାନକୁ ଉପଭୋଗ କରିଚାଲୁ । ମାଟି ତଳେ ରହିଥିବା ସଂପଦ, ମାଟିରେ ସୃଷ୍ଟି ହେଉଥିବା ଫସଲ, ଭୂତଳର ଜଳ, ଏବଂ ଏଠାରେ ଥିବା ପଶୁ, ପକ୍ଷୀ ଆମକୁ ସାଥ୍ ପ୍ରଦାନ କରନ୍ତି । ଆମେ ଏହା ଜୀବନଥିବା ଯାଏଁ ପାଇଥାଉ । ଏହାର ଅର୍ଥ, ଆମେ ମାଟି ମା'ର କୋଳରେ ଜଣେ ଜଣେ ଅତିଥି ।

କିନ୍ତୁ ବେଳେ ବେଳେ ଆମେ ଏପରି ବ୍ୟବହାର କରୁ ଯେପରି ଆମେ ମାଟି ମା'ର ମାଲିକ । ଆମେ ଯେପରି ବୁଝିପାରୁନା, ପ୍ରକୃତିର ଦାନକୁ ଆମକୁ ଫେରାଇବାକୁ ପଡିବ । ମଣିଷର କୃପଣତା ଅନେକ ସମୟରେ ପୃଥିବୀ ଓ ପ୍ରକୃତିକୁ ନଂଷ୍ଟ କରିଛି । ଏହିପରି ଭାବରେ ଯଦି ଆମେ ପୃଥିବୀକୁ ନଷ୍ଟ କରି ଚାଲୁ ତେବେ ଭବିଷ୍ୟତର ବଂଶଧର ଗଣ ଏହାକୁ ଉପଭୋଗ କରିପାରିବେ ନାହିଁ ।

ଅନ୍ୟ ଏକ ଭୟଙ୍କର ବିପଦ ଯାହାକି ମଣିଷକୃତ ଜୈବିକ ଅସ୍ତ୍ର । ଏହା ଦ୍ୱାରା ପଡୋଶୀ ର ପରିବେଶ ନଷ୍ଟ କଲାବେଳେ, ସେ ଅଲକ୍ଷରେ ପୃଥିବୀର ସୁନ୍ଦର ପରିବେଶକୁ ନଷ୍ଟ କରିଚାଲିଛି ।

ପ୍ରକୃତରେ ଆମେ ପୃଥିବୀକୁ ପୋଡି ଚାଲିଛୁ । ପୃଥିବୀର ମାଟି, ପାଣି ଓ ପରିବେଶ ପ୍ରଦୁଷିତ ହୋଇ ସାରିଛି । ଜୀବନ ଏକ ନିସ୍ତେଜ ଅବସ୍ଥାକୁ ଚାଲି ଆସିଛି ।

କୋଟି କୋଟି ବର୍ଷ ଧରି ଏହି ପୃଥିବୀରେ ଜୀବଜନ୍ତୁ ଠାରୁ ଆରମ୍ଭକରି ମଣିଷମାନେ ବସବାସ କରି ଆସୁଛନ୍ତି । ତେବେ ମଣିଷର ଏପରି କଦର୍ଯ୍ୟ ବ୍ୟବହାର ହେତୁ ବହୁ ଗୁରୁତ୍ୱପୂର୍ଣ୍ଣ ଜୀବଜଗତ ଲୋପ ପାଇଯାଇଛନ୍ତି । ଏପରି ଅନେକ ଗୁରୁତ୍ୱପୂର୍ଣ୍ଣ ଜୀବ ଏ ମଧ୍ୟରେ ଲୋପ ପାଇଯିବେ ।

ସମୟ ଉପନୀତ, ଯେତେବେଳେ ଆମକୁ କହିବାକୁ ପଡିବ, 'ପୃଥିବୀକୁ ରକ୍ଷାକର', ଯାହାକି ଯୁଗଯୁଗ ଧରି ଆମକୁ ସୁଖୀ ରଖିପାରିଛି । ଚାଲନ୍ତୁ ପ୍ରତିଜ୍ଞା କରିବା, ମାଟି ମା'ର କ୍ଷତି କରିବା ନାହିଁ । ପୃଥିବୀ ଆମ ପିଲାମାନଙ୍କର । ଆମେ ଏହାର ଯତ୍ନ ନେବା ।

ସଂପାଦକ : ବିଶ୍ୱମ





# ରାକ୍ଷସର ପୁଣ୍ୟ କାମ

ଗୁପ୍ତ ଧନ ପାଇବା ଆଶାରେ ଦୁଷ୍ମାମ ଦଣ୍ଡକାରଣ୍ୟରେ ପହଞ୍ଚିଲା । ସେଠାରେ ଗୋଟିଏ ରାକ୍ଷସ ତା'କୁ ବନ୍ଦୀ କରିଦେଲା । ସେ ଭୟରେ ଥରିବାକୁ ଲାଗିଲା ।

ରାକ୍ଷସ ତା'କୁ ଧୈର୍ଯ୍ୟ ପ୍ରଦାନ କରି ବୁଝାଇ ସୁଝାଇ ନିଜର କାହାଣୀ ଶୁଣାଇଲା, ''ବହୁ ଦିନ ହେଲା ମୁଁ ମାନବ ଓ ପଶୁମାନଙ୍କୁ ଭକ୍ଷଣ କରୁଛି ଓ ଏପରି ନୀଚ ଜୀବନ ବିତାଉଛି । ଦିନେ ଜଣେ ଋଷିବରଙ୍କ ସହିତ ମୋର ଭେଟ ହେଲା । ମୁଁ ତା'କୁ ମୋର ଦୁଃଖ ଜଣାଇଲି । ମୋତେ ଏହି ରାକ୍ଷସ ଜନ୍ମରୁ ଉଦ୍ଧାର କରି ମାନବ ଜନ୍ମ ଦେବା ପାଇଁ ତା'କୁ କାତର ପ୍ରାର୍ଥନା କଲି । ଋଷିବର ମୋର ପ୍ରାର୍ଥନା ଶୁଣିଲେ ଓ ପ୍ରବୋଧନ ଦେଲେ ଯେ ଯଦି ମୁଁ କୌଣସି ପୁଣ୍ୟ କାମ କରିବି ତେବେ ଏହା ସମ୍ଭବ ହୋଇ ପାରିବ ଓ ମୁଁ ମାନବ ଜନ୍ମ ପାଇବା ନିମନ୍ତେ ଯୋଗ୍ୟ ହେବି ।''

ନିଜର କାହାଣୀ ଶୁଣାଇବା ପରେ ରାକ୍ଷସ ଦୁଷ୍ମାମକୁ କହିଲା, ''ତୁମକୁ ଦେଖି ମୋର ମନେ ହେଉଛି, ପୁଣ୍ୟ କାମ କରିବା ପାଇଁ ମୋର ସମୟ ଆସିଯାଇଛି, ମୋର ପାଖରେ ଅମୋଘ ଶକ୍ତି ଅଛି । ତୁମର କ'ଣ ଦରକାର ମୋତେ କୁହ ।''

ଦୁଷ୍ମାମ ମନେକଲା ଯେ ଗୁପ୍ତ ଧନ ମିଳିବା ଏବେ ସହଜ ହୋଇଗଲା । ତେଣୁ ସେ ଧନ ପାଇବାର ଆଶାରେ ଏଠାକୁ ଆସିଥିବା କଥା ଜଣାଇଲା ।

''ସତ କରି କୁହ, ଧନ ତୁମର କାହିଁକି ଏତେ ଆବଶ୍ୟକ ? ମୋତେ ମିଛ କହିଲେ, ଯେଉଁ ଧନ ମୋତେ ଦୃଶ୍ୟ ହେଉଥିବ, ତାହା ତୁମକୁ ଅଦୃଶ୍ୟ ମନେହେବ''- ରାକ୍ଷସ କହିଲା ।

ଦୁଷ୍ମାମ କହିଲା, ''ଧନ ପାଇଲେ ମୁଁ ଧନୀ ହେବି । ସେହି ଧନବଳରେ ମୁଁ ଶକ୍ତିଶାଳୀ ମଲ୍ଲଯୋଦ୍ଧାମାନଙ୍କୁ ରଖିବି । ଯେଉଁମାନେ ମୋର ବିରୋଧ କରିବେ, ମୋ କଥାକୁ ଅମାନ୍ୟ କରିବେ, ତା'କୁ ନିର୍ଯ୍ୟାତନା ଦେବି । ଯେଉଁ ବିଶାଳାକ୍ଷୀଙ୍କୁ ମୁଁ ପ୍ରେମ କରୁଛି, ତା'କୁ ବିବାହ କରିବି ।''

''ଏତେ ଛୋଟ କଥା ପାଇଁ ଧନର କ'ଣ

ମହେଶ

ଆବଶ୍ୟକତା ଅଛି ? ମଲ୍ଲ ଯୋଦ୍ଧା ପାଳିବା କ'ଣ ଦରକାର ? ଯେଉଁ ବିଶାଳକ୍ଷୀକୁ ତୁମେ ପ୍ରେମ କରୁଛ, ତା'କୁ ମୁଁ ମଧୁର କଥାରେ ଭୁଲାଇଦେବି । ସେ ତୁମକୁ ବିବାହ କରିବା ପାଇଁ ରାଜି ହୋଇଯିବ ।''- ରାକ୍ଷସ କହିଲା ।

''କିନ୍ତୁ ବିଶାଳାକ୍ଷୀ ସେପରି ଯୁବକକୁ ବିବାହ କରିବାକୁ ରାଜି ହେବ ନାହିଁ ଯିଏ ଆଗରୁ ବିବାହ କରି ସାରିଛି । ସେ ମୋର ଦ୍ୱିତୀୟ ପତ୍ନୀ ହେବା ପାଇଁ ଆଦୌ ସମ୍ମତି ଦେବ ନାହିଁ ।''- ଦୁଷ୍ଟାମ କହିଲା ।

ତା'ର ଏପରି ଉତ୍ତରରେ ରାକ୍ଷସ ବିସ୍ମିତ ହୋଇ କହିଲା: ''ତେବେ ତୁମର ପ୍ରଥମ ପତ୍ନୀ ଗଲେ କୁଆଡେ ? ତା'ଙ୍କର କ'ଣ ହେଲା ?''- ରାକ୍ଷସର ଏପରି ପ୍ରଶ୍ନ ଦୁଷ୍ଟାମକୁ ବଡ ଅଡୁଆରେ ପକାଇଲା । ସେ କୁଣ୍ଠିତ ହୋଇ କହିଲା: ''ଗ୍ରାମଦେବୀଙ୍କ ନିକଟରେ ତା'କୁ ବଳି ଚଢାଇଦେଲି । ଜଣେ ତାନ୍ତ୍ରିକ କହିଥିଲା ଯେ, ଏପରି କଲେ ମୋ ଘରେ ଧନ ବର୍ଷା ହେବ, କିନ୍ତୁ କିଛି ଧନ ବର୍ଷା ହେଲାନାହିଁ । ଓଲଟି ରାଜାଙ୍କ ସିପାହୀମାନେ ଏ କଥା ଜାଣି ପାରି ମୋ ପିଛା ପଡି ଯାଇଛନ୍ତି ।

''ମନୁଷ୍ୟଙ୍କୁ ପୁନର୍ଜନ୍ମ ଦେଇପାରିବାର ଶକ୍ତି ମୋର ଅଛି । ମୁଁ ତୁମ ପତ୍ନୀଙ୍କୁ ପୁର୍ନଜୀବିତ କରାଇଦେବି । ତୁମର ସବୁ ଅସୁବିଧା ଦୂରେଇଯିବ । ଏପରି କରିବା କି ?'' ରାକ୍ଷସ ପରାମର୍ଶ ଦେଲା ।

''ଯଦି ମୋ ପତ୍ନୀ ଜୀବିତ ହୋଇଯାଏ ତେବେ ମୁଁ ବିଶାଳାକ୍ଷୀକୁ ବିବାହ କରି ପାରିବି ନାହିଁ ।'' ଦୁଷ୍ଟାମ ବ୍ୟସ୍ତ ହୋଇ ପଡିଲା ।

''ଆରେ ଦୁଷ୍ଟ, ତୁ ଗୋଟାଏ ମଣିଷ ନୁହଁ । ମୋ ପରି ରାକ୍ଷସଠାରୁ ମଧ ତୁ ନୀଚ, ଅଧମ, ପାପୀ । ମୁଁ ତତେ ଭଲ ମଣିଷ କରିବା ପାଇଁ ସବୁ ପ୍ରକାରେ ଉଦ୍ୟମ କଲି । ଭଲ ମଣିଷକୁ ସାହାଯ୍ୟ କଲେ ପୁଣ୍ୟ ହୁଏ । ଏବେ ବୁଝି ପାରୁଛି ଯେ, ଆଜି ବି ମୁଁ ପୁଣ୍ୟ କାମ କରି ପାରିବି ନାହିଁ । ଏବେ ତତେ ଖାଇ ମୋର ଭୋକ ମେଣ୍ଟାଇବି ।'' ଏପରି କହି ସେ ଦୁଷ୍ଟାମକୁ ଗୋଟାପଣେ ଗିଳି ପକାଇଲା ।

ଠିକ୍ ତା' ପରକ୍ଷଣରେ ଋଷିବର ପ୍ରକଟିତ ହୋଇ କହିଲେ, ''ଦୁଷ୍ଟାମ ପରି ଅନେକ ପାପୀଙ୍କୁ ଭକ୍ଷଣ କରି ତୁମେ ବହୁତ ପୁଣ୍ୟ କାମ କରିଛ । ତୁମର ଅଜାଣତରେ ଏହି ପୁଣ୍ୟ ସଞ୍ଚିତ ହୋଇ ରହିଛି । ମାତ୍ର ଆଜି ଯେଉଁ କାମ କଲ, ତାହା ସବୁଠାରୁ ଉତ୍ତମ ପୁଣ୍ୟ । ଏବେଠାରୁ ତୁମକୁ ରାକ୍ଷସ ଜନ୍ମରୁ ମୁକ୍ତି ମିଳିଗଲା ।'' ଏପରି କହି ଋଷିବର ଅଦୃଶ୍ୟ ହୋଇଗଲେ ।





# ମାୟା ସରୋବର

*(ଜୟଶୀଳ ଶୋଇଯାଇଥିଲା । ଅର୍ଦ୍ଧରାତ୍ରିରେ ତାକୁ କାହାର ଆର୍ତ୍ତନାଦ ଶୁଭିଲା । ତେଣୁ ସେ ଉଠିପଡି, ତାହା କଣ ଜାଣିବାକୁ ଚାହିଁଲା । ଶ୍ମଶାନରେ ସେ ଏକ ବିଚିତ୍ର ପ୍ରକାର ମଣିଷର ମୁଣ୍ଡ କାଟି ଅଲଗା କରିଦେଲା । ତା ପରେ ପାଖରେ ଥିବା ଏକ ଘରକୁ ଗଲା, ସେଠାରେ ଜଣେ ବୃଦ୍ଧା ରହୁଥିଲା । ସେ ଯେତେବେଳେ ବୃଦ୍ଧା ସହ କଥାବାର୍ତ୍ତା କରୁଥିଲା ସେତେବେଳେ ହିରଣ୍ୟ ନଗରର ରକ୍ଷକମାନେ ସେ ଘରକୁ ଆସି ବୃଦ୍ଧାଟିର ଦ୍ୱାର ଠକ୍ ଠକ୍ କଲେ । ଏହାପରେ-)*

ଏହି ସମୟରେ ବୃଦ୍ଧା ଜୟଶୀଳକୁ ପଚାରିଲେ: ‘‘ପୁତ୍ର, ତୁମେ କ’ଣ କିଛି ଅପରାଧ କରିଛ କି ? ତୁମେ ସୈନିକ ମାନଙ୍କଠାରୁ ରକ୍ଷା ପାଇବା ଉଦ୍ଦେଶ୍ୟରେ ଏଠାରେ ଆଶ୍ରୟ ନେଉ ନାହଁ ତ ?’’

‘‘ମା, ମୁଁ ଏପରି କୌଣସି ଅପରାଧ କରିନାହିଁ । ବଞ୍ଚିବା ପାଇଁ ଏବଂ ନିଜ ପେଟ ପାଇଁ ଚାକିରୀ ଉଦ୍ଦେଶ୍ୟରେ ବୁଲୁଛି ।’’- ଜୟଶୀଳ କହିଲା ।

ବୃଦ୍ଧା ମନରେ ଜୟଶୀଳ ପ୍ରତି ଦୟା ଆସିଲା ଏବଂ ବିଶ୍ୱାସ ହେବାପରେ ସେ କବାଟ ଖୋଲିଲା ।

ନଗର ରକ୍ଷକ କବାଟ ପାଖରେ ଛିଡାହୋଇ ପଚାରିଲା: ‘‘ହେ ବୃଦ୍ଧା ! ଶ୍ମଶାନ ପ୍ରହରୀର ପୁତ୍ର ସହ ଜଣେ ଯୁବକର ଝଗଡା ହୋଇଛି । ତାହାକୁ ସମାଧାନ କରିବା ଉଦ୍ଦେଶ୍ୟରେ ମୁଁ ଏଠାକୁ ଆସିଛି । କ’ଣ ତୁମ ଘରକୁ ଜଣେ ଯୁବକ ପଶି ଆସିଛି, ଯାହା ଅଣ୍ଟାରେ ଖଣ୍ଡା ଝୁଲୁଛି ?’’

ଜୟଶୀଳ ତୁରନ୍ତ କବାଟ ପାଖକୁ ଆସିଲା । ତାକୁ ଦେଖୁ ଦେଖୁ ଶ୍ମଶାନ ପ୍ରହରୀର ପୁତ୍ର ଚିତ୍କାର କରି କହିଲା: ‘‘ମହାଶୟ, ଏଇ ସେହି ଯୁବକ ଯିଏ ମୋ ପିତାଙ୍କର ମୁଣ୍ଡକୁ କାଟି ଅଲଗା କରିଦେଇଛି ।’’

ସିଦ୍ଧ ସାଧକ ତା ଉପରେ ବିରକ୍ତ ହୋଇ କହିଲା: ‘‘ଆରେ ମୁର୍ଖ, ନିଜ ପିତାକୁ ମୃତବୋଲି କାହିଁକି କହୁଛୁ ? ସେ ମୃତ ନୁହଁନ୍ତି । ସେହି ଯୁବକ ତା’ର ଅଦ୍‌ଭୁତ ଖଣ୍ଡାରେ ହାଣିଥିବା ଲୋକଟି ହେଉଛି କାଳ । ଯିଏ ତୁମ ପିତାଙ୍କ ଉପରେ ସବାର ଥିଲା । ଏହି ରହସ୍ୟମୟ କଥା ମୁଁ ତାଙ୍କଠାରୁ



''ଆରେ ବାଳକ, ସେହି ମୃତ ଶରୀର କାହାର ମୁଁ ଦେଖି ନାହିଁ । ମୁଁ ମନ୍ତ୍ର ଶକ୍ତି ଦ୍ୱାରା କାଳକୁ ଆବାହନ କଲି । ଏହାପରେ ଶବରେ ଜୀବନ ସଞ୍ଚାର ହେଲା । ମାତ୍ର କାଳ ସହିତ ମୁଁ ଲଢେଇ କରିପାରିଲି ନାହିଁ ତେଣୁ ସେଠାରୁ ଦୌଡିବାକୁ ଲାଗିଲି । ସେତେବେଳେ ଏହି ବୀର ଯୁବକ କାଳର ମୁଣ୍ଡକୁ କାଟି ଶରୀରରୁ ଅଲଗା କରିଦେଲା ଏବଂ ମତେ ବିପଦରୁ ରକ୍ଷା କଲା ।''- ସିଦ୍ଧ ସାଧକ କହିଲେ ।

ନଗର ରକ୍ଷକ ହସି ହସି କହିଲା: ''ଏହି ଦୁଇଜଣ, ଚାରି ପାଞ୍ଚ ଘଣ୍ଟା ହେବ ଏହି ଘଟଣାରେ ଅଯଥାରେ କଳି କରିଚାଲିଛନ୍ତି ଏବଂ ମୋ ମୁଣ୍ଡଟିକୁ ମଧ ବିଗାଡି ସାରିଲେଣି । ଏମାନେ ଏପର୍ଯ୍ୟନ୍ତ ଜାଣିପାରୁନାହାଁନ୍ତି ଯେ ତୁମେ ମୁଣ୍ଡ କାଟିଥିବା ଲୋକଟି କିଏ ? ମତେ ଲାଗୁଛି ଏଥିରେ କିଛି ରହସ୍ୟ ରହିଛି । ମନ୍ତ୍ରୀ ହିଁ କେବଳ ଏହାର ସମାଧାନ ସୂତ୍ର ବାହାର କରିପାରିବେ । ତେଣୁ ତୁମେ ତିନିଜଣ ମୋ ସାଙ୍ଗରେ ମନ୍ତ୍ରୀଙ୍କ ପାଖକୁ ଚାଲ । ଏବଂ ସେମାନେ ରାଜଭବନ ଆଡକୁ ବାହାରି ପଡିଲେ ।

ରାଜଭବନ ପାଖରେ ପହଞ୍ଚିଲା ବେଳେ ମନ୍ତ୍ରୀ ରାଜଭବନକୁ ପ୍ରବେଶ କରୁଥିଲେ । ସେହିଠାରେ ନଗର ରକ୍ଷକ ମନ୍ତ୍ରୀଙ୍କୁ ସବୁକଥା ବୁଝାଇ କହିଲେ ।

ମନ୍ତ୍ରୀ ଧ୍ୟାନର ସହ ସବୁ କଥା ଶୁଣିଲେ ଏବଂ କିଛି ସମୟ ଚିନ୍ତା କରି କହିଲେ, ''ଶ୍ମଶାନ ପ୍ରହରୀର ମୃତ୍ୟୁ ହୋଇଛି । ଏବଂ ତାହାର ଜୀବ ଦାନ ପାଇବା ଅସମ୍ଭବ । ମାତ୍ର ସିଦ୍ଧ ସାଧକ କହିବା ଅନୁଯାୟୀ ସେହି ମୃତ ଶରୀରରେ କୌଣସି କାଳର ପ୍ରବେଶ ହୋଇଛି ଯାହା ଫଳରେ ଜୀବ ଦାନ ପାଇ ସେ ଚଲା ବୁଲା କରିପାରୁଛି । ଏହି ଭଳି ଏକ ଜୀବର ମୁଣ୍ଡକୁ ଏହି ଯୁବକ କାଟିଦେଇଛି ।

ଶୁଣିଛି ।''

ନଗର ରକ୍ଷକ ସେହି ଦୁଇଜଣଙ୍କୁ ଭୀଷଣ ଗାଳିଦେଇ ଜୟଶୀଳ ଆଡକୁ ଚାହିଁ କିଛି କହିବା ପୂର୍ବରୁ ଜୟଶୀଳ ନିଜର ପରିଚୟ ଦେଇ କହିଲା: ''ମହାଶୟ, ମୋର ନାମ ଜୟଶୀଳ । ଅମରାବତୀ ନଗରର ମୁଁ ଅଧିବାସୀ । ଶ୍ମଶାନରେ ଏକ ବିଚିତ୍ର ଧରଣ ମୁଣ୍ଡର ଆକ୍ରମଣରୁ ରକ୍ଷା ପାଇଁ ମୁଁ ସେହି ମୁଣ୍ଡକୁ କାଟି ଅଲଗା କରିଦେଲି । ଯାହା ମତେ ବାଧ ହୋଇ କରିବାକୁ ପଡିଥିଲା ।

''ତୁମେ କାଳକୁ ନୁହେଁ, ମୋର ପିତାଙ୍କୁ ମାରିଛ । ଯେତେବେଳେ ମତେ ଜଣାପଡିଲା କି ସେ ମରିଯାଇଛନ୍ତି ସେତେବେଳେ ମୁଁ ତାଙ୍କୁ ଶ୍ମଶାନକୁ ଆଣିଥିଲି । କାଠ ଆଣିବାକୁ ଯାଇଥିବା ବେଳେ ଦେବତାଙ୍କ ଆଶୀର୍ବାଦରେ ସେ ବଞ୍ଚିଗଲେ । ଯେତେବେଳେ ମୁଁ ଫେରିଲି ସେତେବେଳେ ମୁଁ ତୁମକୁ ତାଙ୍କ ମୁଣ୍ଡ କାଟିବାର ଦେଖିଥିଲି ।''- ଶ୍ମଶାନ ପ୍ରହରୀର ପୁତ୍ର କଟୁ ଭାଷାରେ କହିଲା ।



ତେଣୁ ଏହି ଯୁବକ ହେଉଛି ଏକ ହତ୍ୟାକାରୀ, 'କିନ୍ତୁ..' ଏହା କହିବାକୁଯାଇ ସେ ଚୁପ୍ ରହିଗଲେ ।

ଏହି 'କିନ୍ତୁ' ଶବ୍ଦର ଫାଇଦା ଉଠାଇବାକୁ ଯାଇ ଜୟଶୀଳ କହିଲା: ''ମହାଶୟ ଆତ୍ମ ରକ୍ଷା ପାଇଁ ଶତ୍ରୁକୁ ମାରିଦେବା କ'ଣ ଅପରାଧ କୁହାଯିବ ?''

''ହଁ, ହଁ ତୁମେ ଯେଉଁ ବିବରଣୀ ପ୍ରଦାନ କରିଛ ତାହା ମଧ୍ୟ ସତ୍ୟ''- ମନ୍ତ୍ରୀ କହିଲେ ।

ମନ୍ତ୍ରୀ ସେମାନଙ୍କୁ ସେଠାରେ ରହିବାକୁ କହିଲେ ଏବଂ ନିଜେ ଏକୁଟିଆ ରାଜାଙ୍କୁ ସାକ୍ଷାତ କରିବାକୁ ଚାଲିଗଲେ । ସେହି ସମୟରେ କନକାକ୍ଷ ରାଜାଙ୍କର ସେନାଧକ୍ଷଙ୍କ ପୁତ୍ର ମଙ୍ଗଳବର୍ମା ରାଜାଙ୍କ ସହିତ କଥାବାର୍ତ୍ତା ହେଉଥିଲେ । ମନ୍ତ୍ରୀଙ୍କୁ ଦେଖି ରାଜା କହିଲେ: ''ମହାମନ୍ତ୍ରୀ, ମଙ୍ଗଳବର୍ମା ଯୁବରାଜ ଓ ଯୁବରାଣୀଙ୍କୁ ଖୋଜିବା ପାଇଁ ଅନୁମତି ମାଗୁଛନ୍ତି । ଆପଣ କ'ଣ ଚାହାଁନ୍ତି?''

''ମହାରାଜ, ଜୟଶୀଳ ନାମକ ଏକ ଯୁବକ ସହିତ ମୋର ଭେଟ ହୋଇଛି, ଯିଏକି ଜଣେ ବୀର ଓ ସାହାସୀ । ତାର ଅଦ୍ଭୁତ ଏବଂ ଅଲୌକିକ ଶକ୍ତିରେ ଭରପୁର ଏକ ଖଣ୍ଡା ଥିବାର ମଧ୍ୟ ଜଣା ପଡ଼ିଛି ।''- ମନ୍ତ୍ରୀ କହିଲେ ।

ମନ୍ତ୍ରୀଙ୍କ କଥା ଶୁଣି କନକାକ୍ଷ ଚିନ୍ତାରେ ପଡ଼ିଗଲେ । ମଙ୍ଗଳବର୍ମା ମନକୁ ମନ ମନ୍ତ୍ରୀଙ୍କ ଉପରେ ଖୁବ୍ ରାଗିଲା । ସେ ନିଜର ରାଗ ଉପରେ ଅକ୍ତିଆର ରଖିନପାରି କଟୁ ଭାଷାରେ କହିଲା : ''ଏହି ଜୟଶୀଳ ନାମକ ଯୁବକ ପ୍ରକୃତରେ ଭଲ ବଂଶର ତ ? ମହାରାଜ ଘୋଷଣା କରିଛନ୍ତି ଯେଉଁ ଯୁବରାଜ ଯୁବରାଣୀଙ୍କୁ ଖୋଜି ଆଣିବେ ତାଙ୍କୁ ଅଧାରାଜ୍ୟ ଦିଆଯିବ । ପ୍ରକୃତରେ ସେ ଏଥିପାଇଁ ଯୋଗ୍ୟ ତ ?''

ଏହିପରି ଏକ ଅଂସଗତ ପ୍ରଶ୍ନ ଶୁଣି ମନ୍ତ୍ରୀ କହିଲେ: '' ଆମକୁ ତ ଏଯାଏଁ ଜଣା ନାହିଁ ଯେ ଯିଏ ଯୁବରାଜ ଓ ଯୁବରାଣୀଙ୍କୁ ଅପହରଣ କରିଛି ସେ ମଣିଷ ନା ଦାନବ ? ଏପରି ଏକ ଭୟଙ୍କର ପରିସ୍ଥିତିରେ ଯିଏବି ସେମାନଙ୍କୁ ଖୋଜି ଆଣିବ ସେ ନିଶ୍ଚିନ୍ତ ଭାବରେ ଶକ୍ତିଶାଳୀ, ପରାକ୍ରମୀ ଓ ସୁଯୋଗ୍ୟ ଅଟେ । ସେହିପରି ପରାକ୍ରମୀ ବୀରକୁ ଅଧା ରାଜ୍ୟ ଦେବାରେ କ୍ଷତି କ'ଣ ? ସେ ତ ପ୍ରକୃତରେ ସେଥିପାଇଁ ଯୋଗ୍ୟ ଅଟେ ।''

''ଆମେ କିପରି ବିଶ୍ୱାସ କରିବୁ ଯେ ତା'ର ଖଣ୍ଡାରେ ଅସୀମ ଶକ୍ତି ଓ ଅଦ୍ଭୁତ କୌଶଳ ଅଛି । ସେହି ଖଣ୍ଡା ମତେ ଥରେ ଦେଖାନ୍ତୁ, ମୁଁ ତାର ପରୀକ୍ଷା ନେବାକୁ ଚାହେଁ ।''- ମଙ୍ଗଳବର୍ମା କହିଲା ।

କନକାକ୍ଷ ରାଜା ଏପରିଏକ ଆହ୍ୱାନକୁ ସମର୍ଥନ କରି କହିଲେ: ''ମନ୍ତ୍ରୀ ମହାଶୟ, ଜୟଶୀଳର ଖଣ୍ଡା ପରୀକ୍ଷା ନିମନ୍ତେ ମଙ୍ଗଳବର୍ମାଙ୍କୁ ସୁଯୋଗ ଦିଆଯାଉ । ଯଦି ପ୍ରକୃତରେ ସେହି ଖଣ୍ଡାଟି ଶକ୍ତିମାନ ହୋଇଥିବ ତେବେ ଆମେ ଉକ୍ତ ଯୁବକକୁ ସେହି ଖଣ୍ଡା ଫେରାଇଦେଇ ତା'ର ଉଚିତ୍ ଚାକିରୀ



ବ୍ୟବସ୍ଥା କରିଦେବା ।''

''କି, ପ୍ରକାର ପରୀକ୍ଷା ଆପଣ ନେବାକୁ ଚାହାଁନ୍ତି ମହାରାଜ''- ମନ୍ତ୍ରୀ ପଚାରିଲେ ।

''ଆମ ମୃଗଶାଳାରୁ ଦୁଇଟି ବଡ ବଡ ବାଘଙ୍କୁ ପିଞ୍ଜରା ମଧ୍ୟରୁ ମୁକ୍ତ କରିବାକୁ ଅଧିକାରୀମାନଙ୍କୁ ଆଦେଶ ଦିଆଯାଉ । ଏହି ଶକ୍ତିମାନ ଖଣ୍ଡା ଧରି ପ୍ରସ୍ତୁତ ମଙ୍ଗଳବର୍ମା ପିଞ୍ଜରା ବାହାରୁ ଆସିଥିବା ବାଘମାନଙ୍କୁ ସାମନା କରୁ ।''- କନକାକ୍ଷ ରାଜା କହିଲେ ।

ମନ୍ତ୍ରୀଙ୍କ କହିବାପରେ ଜୟଶୀଳ ନିଜର ଖଣ୍ଡା ମଙ୍ଗଳବର୍ମାଙ୍କୁ ଦେଇଦେଲେ । ଦେଖୁ ଦେଖୁ ପିଞ୍ଜରାରୁ ଦୁଇଟି ବାଘ ମୁକ୍ତ ହୋଇ ପ୍ରାଙ୍ଗଣକୁ ଚାଲିଆସିଲେ । ସେ ଥିଲା ଏପରି ଏକ ପ୍ରାଙ୍ଗଣ ଯାହାର ଚାରିପଟେ ଥିଲା ବିରାଟ ପ୍ରାଚୀର । ମୃଗ ଶାଳାର ମାଲିକମାନେ ମଙ୍ଗଳବର୍ମାଙ୍କୁ ସତର୍କ କରି ପିଞ୍ଜରାରୁ ବାଘ ଦୁଇଟିକୁ ଖୋଲି ଦେଇଥିଲେ । ରାଜା, ମନ୍ତ୍ରୀ ଓ ଜୟଶୀଳ ପାଚେରୀ ଉପରେ ବସି ବାଘ ସହିତ ମଙ୍ଗଳବର୍ମାର ଲଢ଼େଇ ଦେଖିବାପାଇଁ ପ୍ରସ୍ତୁତ ହୋଇ ରହିଥିଲେ । ମଙ୍ଗଳବର୍ମାକୁ ଦେଖି ବାଘ ଦୁଇଟି ହିଂସ୍ର ଭାବରେ ଆକ୍ରମଣ କରିବାକୁ ଆସିଲେ । ସେନାଧ୍ୟକ୍ଷଙ୍କ ପୁତ୍ର ମଙ୍ଗଳବର୍ମା ଖଣ୍ଡା ଯୁଦ୍ଧ ଓ ଧର୍ନୁ ବିଦ୍ୟାରେ ପାରଙ୍ଗମ ଥିଲେ । କିନ୍ତୁ ଯେତେବେଳେ ସେ ଦେଖିଲେ ଦୁଇଟି ବାଘ ବିରାଟ ବିରାଟ ମୁଖ ଖୋଲି ତାଙ୍କ ଆଡକୁ ମାଡି ଆସୁଛନ୍ତି ସେ ସମୟରେ ସେ ଭୟରେ କମ୍ପିବାକୁ ଲାଗିଲେ । ଏହି ସମୟରେ ଉପରେ ବସି ରହିଥିବା ଜୟଶୀଳ ଜାଣିପାରିଲେ ଯେ ବାଘ ଦୁଇଟିଙ୍କ ଠାରୁ ଅନ୍ତଃତ ନିଜକୁ ରକ୍ଷା କରିବାପାଇଁ ମଙ୍ଗଳବର୍ମା ଖଡ୍‌ଗର ଉପଯୋଗ କରିବା ଉଚିତ୍ । କିନ୍ତୁ ମଙ୍ଗଳବର୍ମା ଚୁପ୍ ଚାପ୍ ଠିଆହୋଇ ଯୋର୍‌ରେ କମ୍ପୁଥାନ୍ତି । ତାକୁ ସାହସ ଦେବାପାଇଁ ଜୟଶୀଳ ଚିତ୍କାର କରି କହିଲା: ''ମଙ୍ଗଳବର୍ମା ତୁମର ହାତରେ ଥିବା ଖଣ୍ଡାଟିକୁ ଏଥର ବ୍ୟବହାର କର । ସେଥିରେ ଭରି ରହିଛି ଅମାପ ଶକ୍ତି । ତୁମେ ଡର ନାହିଁ, ତୁମେ ନିଶ୍ଚିତ ଭାବରେ ଏହି ଖଣ୍ଡାକୁ ବ୍ୟବହାର କର ।''

ଏତିକି କଥା ସରୁ ନ ସରୁ ହଠାତ୍ ଏକ ବିରାଟ ବାଘ ମଙ୍ଗଳବର୍ମା ଉପରକୁ କୁଦି ପଡି ତାର କାନ୍ଧକୁ କାମୁଡି ଧରିଲା । ମଙ୍ଗଳବର୍ମା ଜାଣିଲା ଯେ ତା'ର ମୃତ୍ୟୁ ସୁନିଶ୍ଚିତ । ଏଥର ସେ ବାଘଟିକୁ ଆକ୍ରମଣ କରିବାପାଇଁ ଖଡ୍‌ଗଧରି ପ୍ରସ୍ତୁତ ହୋଇଗଲା । କିନ୍ତୁ ସେ ଥରୁଥିବା ହେତୁ ତା ହାତରୁ ଖଡ୍‌ଗଟି ତଳେ ଖସି ପଡିଲା ।

ସିଦ୍ଧ ସାଧକ ଉଚ୍ଚସ୍ୱରରେ ଚିତ୍କାର କଲା: ''ବୀର ଯୁବକ ଜୟଶୀଳ ତୁମେ ଏଥର ତୁମର ଦକ୍ଷତା ଦେଖାଅ ।''

ଜୟଶୀଳ ଯୋର୍‌ରେ ଡାଳିମାରି ଦଶଫୁଟ ପାଚେରୀ ଉପରୁ ବିଜୁଳି ବେଗରେ ବାଘର ସାମ୍ନାକୁ

ଡେଇଁ ପଡିଲା ଓ ଭୂମିରେ ପଡିଥିବା ସେହି ଖଣ୍ଡାଟିକୁ ନିଜ ହାତକୁ ନେଇଗଲା ।

କନକାକ୍ଷ ରାଜା ଜୟଶୀଳର ଏପରି ସାହାସ ଦେଖି ଚକିତ ହୋଇ କହିଲେ: ''ବାଃ ଏପରି ସାହାସ ! ଏପରି ଯୁବକର ସାହାଯ୍ୟ ମିଳିଲେ ଆମେ ନିଶ୍ଚିତ ଭାବରେ ଯୁବରାଜ ଓ ଯୁବରାଣୀଙ୍କୁ ଉଦ୍ଧାରକରି ଆଣିପାରିବା ।''

ଏ ମଧ୍ୟରେ ଜୟଶୀଳ ଭୂମିକୁ ତା ପାଦରେ ଯୋର୍‌ରେ ଘସିଲା ଓ ଚାରି ପାଦ ପଛକୁ ଯାଇ ବାଘକୁ ଅକ୍ତିଆର କରିବା ପାଇଁ ପ୍ରସ୍ତୁତ ହେଲା । ହଠାତ୍ ଏକ ବାଘ ତା ଆଡକୁ ମାଡି ଆସି ଆକ୍ରମଣ କରିବାକୁ ବସିଲା । ଏହି ସମୟରେ ଜୟଶୀଳ ଗୋଟିଏ ପାଦ ପଛକୁ ଫେରି ହଠାତ୍ ଖଣ୍ଡାଧରି ବାଘର ଛାତିରେ ଭଷି ଦେଲା ।

ବାଘଟି ଭୂମିରେ ପଡି ଛଟପଟ ହେବାକୁ ଲାଗିଲା । ସାଥିବାଘଟିର ଏପରି ଦୁର୍ଦ୍ଦଶା ଦେଖି ଅନ୍ୟବାଘଟି ଭୟଭୀତ ହୋଇ ପଛକୁ ପଛକୁ ଦୌଡି ପିଞ୍ଜରା ମଧ୍ୟରେ ପଶିଗଲା ଓ ନିଶ୍ଚଳ ଭାବରେ ପଡିରହିଲା । ପାଚେରୀ ଉପରେ ବସିଥିବା ରାଜା ଓ ସାଥିଗଣ ଜୟଶୀଳର ଏହି ବୀରତ୍ୱରେ ଖୁସିହୋଇ ହର୍ଷଧ୍ୱନୀ କଲେ ।

ଏ ସବୁ ଘଟଣା ଦେଖି ମଙ୍ଗଳବର୍ମାର ସାହାସ ଆସିଲା ଓ ସେ ଆଖି ଖୋଲି ଅନାଇଲା । ସେ ମରିଥିବା ବାଘ ଆଡ଼କୁ ଆସି ଦୀର୍ଘନିଶ୍ୱାସ ପକାଇ ରାଜାଙ୍କ ଆଡକୁ ମୁଣ୍ଡାଟେକି କହିଲା: ''ମହାରାଜ ନିଶ୍ଚିତ ଭାବରେ ଏହି ଖଣ୍ଡା ଅପୂର୍ବ ଓ ଅଦ୍ଭୁତ । ଦୁର୍ଭାଗ୍ୟ ବଶତଃ ଏହା ମୋ ହାତରୁ ତଳକୁ ପଡିଗଲା ତେଣୁ ମୁଁ ତାର ଶକ୍ତି ନିରୂପଣ କରିପାରିଲିନାହିଁ । କିନ୍ତୁ ଜୟଶୀଳ ପ୍ରକୃତରେ ଖଣ୍ଡାର ଶକ୍ତି ପରୀକ୍ଷା କରି ଦେଖାଇଲେ ।''

''ତୁମେ ଠିକ୍ କହିଲ ମଙ୍ଗଳବର୍ମା, ଦେଖୁ ଦେଖୁ ତୁମେ ବଞ୍ଚିଗଲ ।'' ଏତିକି କହି ମନ୍ତ୍ରୀ ସ୍ମିତ ହସିଲେ ।

''ଏହି ପରି ଏକ ଶକ୍ତି ଶାଳୀ ଖଣ୍ଡା ଥାଉ





ଦେଖି ଭୟଙ୍କର ଭୟ ମଧ୍ୟ ଲୁଚି ଚାଲିଯାଏ । ନିୟତିକୁ ହାତକୁ ଆଣିବାକୁ ଦିନେ ମୁଁ ତୁମର ସହାୟତା ଆବଶ୍ୟକ କରିବି । ଯୁବରାଜ ଓ ଯୁବରାଣୀଙ୍କୁ ଖୋଜି ଆଣିବାର ସାମର୍ଥ୍ୟ କେବଳ ତୁମର ଅଛି । ତୁମଦ୍ୱାରା ରାଜାଙ୍କ ସମସ୍ତ ସମସ୍ୟା ଓ ଚିନ୍ତା ଦୂର ହୋଇଯିବ ।''

ଏହାପରେ ସମସ୍ତ ସେବକଙ୍କ ସହିତ ମନ୍ତ୍ରୀ ରାଜାଙ୍କୁ ଭେଟିବାକୁ ଗଲେ । ରାଜାଙ୍କର ଭବନ ଦ୍ୱାରରେ ପହଞ୍ଚୁ ପହଞ୍ଚୁ ଦରୱାନ୍‌ର ପୁତ୍ର ଯୋର୍‌ରେ ଚିତ୍କାରକରି କହିଲା, ମହାପ୍ରଭୁ ପୁଣିଥରେ ମୋ ବାପା ମରିଗଲେଣି । କିନ୍ତୁ ଯିଏ ମୋର ବାପାଙ୍କୁ ମାରିଥିଲେ ତାଙ୍କୁ ଆପଣ ଦଣ୍ଡ ଦିଅନ୍ତୁ ।''

ମନ୍ତ୍ରୀ ଧର୍ମମିତ୍ର ପଛକୁ ବୁଲି ଦେଖିଲେ ଓ ଆଶ୍ୱାସନା ଦେଇ କହିଲେ: ''ଆପଣଙ୍କ ବାପା ମରିଯିବା ବିଷୟରେ ଚିନ୍ତା କରନ୍ତୁ ନାହିଁ । ଏହାପରେ ତୁମେ ହିଁ ନଗରର ସବୁ ଶ୍ମଶାନର ପ୍ରହରୀ ହେବ । ଏବେ ତୁମେ ଯେତିକି ଟଙ୍କା ଦରମା ଆକାରରେ ପାଅ ତାର ଦଶଗୁଣ ଦରମା ପାଇବ । ଏବେ ତୁମେ ଚିତ୍କାର ନକରି ଘରକୁ ଫେରିଯାଅ ।''

ପ୍ରଭୁ ବଞ୍ଚିଥିବା ପର୍ଯ୍ୟନ୍ତ ମୁଁ ଆପଣଙ୍କ ଋଣ ସୁଝି ପାରିବି ନାହିଁ । ଗୋଟିଏ ପକ୍ଷରେ ବାପା ମରିଯାଇଥିଲେ । ସେଥିପାଇଁ ମତେ ଦୁଃଖ ଲାଗୁଛି । ଏହା କହି ସେ କାନ୍ଦି କାନ୍ଦି ଘରକୁ ଚାଲିଗଲା ।

ସେ ଚାଲିଗଲା ପରେ ରାଜା, ମନ୍ତ୍ରୀ, ଜୟଶୀଳ ଓ ସିଦ୍ଧ ସାଧକ ସମସ୍ତେ ରାଜଭବନରେ ପହଞ୍ଚିଲେ ।

କନକାକ୍ଷ ରାଜା ସିଂହାସନ ଉପରେ ବସି ବଡ ଚିନ୍ତାରେ ପଡିଗଲେ । କିଛି ସମୟପରେ ସେ ମନ୍ତ୍ରୀଙ୍କୁ କହିଲେ: ''ମହାମନ୍ତ୍ରୀ ଏବେ ଆମେ କ'ଣ କରିବା ? ଯୁବରାଜ ଓ ଯୁବରାଣୀଙ୍କୁ ଖୋଜିବା ପାଇଁ ଆମର ସମସ୍ତ ଲୋକ ବିଫଳ ହୋଇଗଲେ ।

ଥାଉ ମଙ୍ଗଳବର୍ମା କିଛି କରିପାରିଲେ ନାହିଁ ।''- ରାଜା କନକାକ୍ଷ ନିଜର ସନ୍ଦେହ ବ୍ୟକ୍ତ କଲେ ।

ମନ୍ତ୍ରୀ ଧର୍ମମିତ୍ର ମୁଣ୍ଡ ତଳକୁ କରି କହିଲେ: ଜୟଶୀଳ, ଏବେ ତୁମେ ଉପରକୁ ଚାଲି ଆସ । ତୁମର ଧୈର୍ଯ୍ୟ ଓ ସାହାସରେ ଆମେ ସମସ୍ତେ ପ୍ରୀତ । ତୁମେ ଆମର ସେନାପତିଙ୍କ ପୁତ୍ରଙ୍କର ପ୍ରାଣରକ୍ଷା କରିଛ । ତେଣୁ ତୁମକୁ ଆମର ହାର୍ଦ୍ଦିକ ଧନ୍ୟବାଦ ।''

ଜୟଶୀଳ କହିଲା: ମହାରାଜ, ଯେଉଁ ବାଘ ପିଞ୍ଜରାଟି ଖୋଲା ଅଛି ତାକୁ ଦୟାକରି ବନ୍ଦ କରନ୍ତୁ । ମୁଁ ଉପରକୁ ଚାଲିଯିବା ମାତ୍ରେ ଏହି ବାଘଟି ପୁଣିଥରେ ମଙ୍ଗଳବର୍ମାଙ୍କୁ ଆକ୍ରମଣ କରିପାରେ ତେଣୁ ପୂର୍ବରୁ ସତର୍କ ହେବା ଭଲ ।

ମନ୍ତ୍ରୀ ଏଥର ହାତ ବଢାଇ ଜୟଶୀଳକୁ ଟାଣି ଧରିଲେ ଓ ଉପରକୁ ନେଇ ଆସିଲେ । ସେ ଉପରେ ପହଞ୍ଚିବା କ୍ଷଣି ସିଦ୍ଧ ସାଧକ ତାକୁ ଗଳାରେ ଲଗାଇ କହିଲେ: ''ତୁମେ ବେଶ୍ ସାହାସୀ । ତୁମକୁ

ଏପରି ପରିସ୍ଥିତିରେ ଆମେ ଏହି ସାହସୀ, ଶକ୍ତିଶାଳୀ ଜୟଶୀଳର ସାହାଯ୍ୟ ନେବା ଠିକ୍ ହେବତ ?''

ମନ୍ତ୍ରୀ ଜୟଶୀଳଙ୍କୁ କ'ଣ ସବୁ କହିବାକୁ ଯାଉଥିଲେ ଓ ଏହି ସମୟରେ ସିଦ୍ଧ ସାଧକ ଶାନ୍ତ ସ୍ୱରରେ କହିଲେ: ''ଜୟଶୀଳଙ୍କୁ କାର୍ଯ୍ୟଦେବା ହେବ । ଅପାଣଙ୍କର ପୁତ୍ର ଓ ପୁତ୍ରୀଙ୍କୁ ନେଇ ଆସିବାପାଇଁ କେବଳ ଜୟଶୀଳଙ୍କ ପାଖରେ ପର୍ଯ୍ୟାପ୍ତ ଶକ୍ତି ଯେ ଅଛି ତାହା ନୁହେଁ ବରଂ ତାଙ୍କ ପାଖରେ ଅମାପ ସାହାସ ଓ ଅଲୌକିକ ଜ୍ଞାନ ଅଛି ଯାହା ଜଣେ ବୀର ପୁରୁଷ ପାଇଁ ନିତାନ୍ତ ଆବଶ୍ୟକ । ଏପରିକି ଜୟଶୀଳ ସହିତ ମତେ ମଧ ଆପଣ ଯିବାପାଇଁ ଅନୁମତି ଦିଅନ୍ତୁ ।''

ଜୟଶୀଳଙ୍କୁ କିନ୍ତୁ ସିଦ୍ଧ ସାଧକଙ୍କର ଏହି ପ୍ରସ୍ତାବ ଭଲ ଲାଗିଲା ନାହିଁ । ସେ ବିନୟର ସହ କହିଲେ: ''ମହାରାଜା ମୋର ପଦୁଟିଏ କଥା କହିବାର ଅଛି ।''

''ହଁ, ହଁ ନିର୍ଭିକ ଭାବରେ କୁହନ୍ତୁ, ଆମେ ଆପଣଙ୍କ କଥା ଶୁଣିବା ପାଇଁ ମଧ ପ୍ରସ୍ତୁତ ।''- ମହାରାଜ କହିଲେ ।

ମହାରାଜ, ମୁଁ ମୋର ଦେଶ ଛାଡି ଏଠାକୁ ଆସିଛି । ମତେ କୌଣସି ଚାକିରୀ ଦେଲେ ମୁଁ ଖୁସି ହେବି । ଆପାଣଙ୍କ ପ୍ରତି ଚିର କୃତଜ୍ଞ ହେବି· ଜୟଶୀଳ କହିଲେ ।

କନକାକ୍ଷ ରାଜା ମନ୍ତ୍ରୀଙ୍କ ଆଡକୁ ଦେଖିଲେ । ତେଣୁ ମନ୍ତ୍ରୀ କହିଲେ: ''ଜୟଶୀଳ, ମହାରାଜା ତୁମକୁ ଚାକିରୀ ଦେବେ । ତୁମେ ତାଙ୍କର ଅତ୍ୟନ୍ତ ବିଶ୍ୱସ୍ତ ସେବକ ହୋଇ ରହିବ ତେବେ ରାଜାଙ୍କ ଆଦେଶ ପାଳନ କରିବା ସେବକଙ୍କ ପ୍ରଥମ କର୍ତ୍ତବ୍ୟ ।''

''ନିଶ୍ଚିତ ଭାବରେ । ରାଜା ଯାହା ମଧ ଆଦେଶ ଦେବେ ମୁଁ ସେସବୁ ପାଳନ କରିବା ପାଇଁ ପ୍ରସ୍ତୁତ ।''- ଜୟଶୀଳ ବିନୟତାର ସହ କହିଲେ ।

ମନ୍ତ୍ରୀ ଧର୍ମମିତ୍ର ଜୟଶୀଳର ଏପରି ଉତ୍ତର ଶୁଣି କହିଲେ: ''ରାଜାଙ୍କର ଆଦେଶ ତୁମେ ତୁରନ୍ତ ଯୁବରାଜ ଓ ଯୁବରାଣୀଙ୍କୁ ଖୋଜି ନେଇ ଆସ ।''

ଏହି ସମୟରେ ରାଜାଙ୍କ ଏକ ସେବକ ଦୌଡି ଆସି ରାଜାଙ୍କୁ ଏକ ମୋତି ହାର ଓ ଏକ ଭଙ୍ଗା ଖଣ୍ଡା ଦେଖାଇ କହିଲା: ''ମହାରାଜ, ଯେଉଁଠାରେ ଯୁବରାଜ ଓ ଯୁବରାଣୀ ହଜିଗଲେ ସେଠାରୁ ଏକ ଭୀଲ୍ ଯୁବକ ଏହି ଖଣ୍ଡା ଓ ମୋତି ହାର ପାଇଛି । ତା'ର ମାନସିକ ସ୍ଥିତି ଭଲ ନାହିଁ । ସେ ପାଗଳଙ୍କ ପରି ଚିତ୍କାର କରୁଛି ।''



ପଚିଶ ବର୍ଷ ପୁରୁଣା କାହାଣୀ

# ସନ୍ୟାସୀ ହେବାର ମାୟା

ରାମନାରାୟଣ ନିଜର ପତ୍ନୀ ଓ ଦୁଇଜଣ ପିଲାଙ୍କ ସହିତ ସୁଖୀ ଥିଲେ । କିନ୍ତୁ ହଠାତ୍ ତାଙ୍କ ମନରେ ସନ୍ୟାସ ଗ୍ରହଣ କରିବାର ଇଚ୍ଛା ଜାଗ୍ରତ ହେଲା । ପତ୍ନୀ ତାଙ୍କୁ କହିଲେ, 'ଆମକୁ ଛାଡି ଯାଅ ନାହିଁ ।' ତଥାପି ରାମନାରାୟଣ ତାଙ୍କ କଥା ଶୁଣିଲେ ନାହିଁ ।

''ସନ୍ୟାସ ଗ୍ରହଣ କରିବାର ଅବସ୍ଥା ଏ ଯାଏଁ ତୁମର ଆସିନାହିଁ । ଏବେ ତ ତୁମର ପୁଅ ବେଶ୍ ଛୋଟ ଅଛି । ତେଣୁ ସନ୍ୟାସ ଗ୍ରହଣ କରନାହିଁ ।''

ପତ୍ନୀ ସହିତ ମିଶି ଅନେକଲୋକ ତାଙ୍କୁ ମନା କରିବା ସତ୍ତ୍ୱେ ରାମନାରାୟଣ ନିଜର ଜିଦି ଛାଡିଲା ନାହିଁ ।

ଦିନେ ସକାଳୁ ରାମନାରାୟଣ ଘରୁ ଯିବାପାଇଁ ବାହାରୁଛନ୍ତି, ସେତେବେଳେ ତାର ପତ୍ନୀ ତାଙ୍କୁ କହିଲେ: ରାସ୍ତାରେ ଭୋକଲାଗିବ, କିଛି ପଖାଳ ଭାତ ଦେଉଛି । ନେଇଯାଅ ।''

ରାମନାରାୟଣ ଭାତନେଇ ଚାଲିଗଲା । ରାସ୍ତାରେ ଏକ ବୃକ୍ଷ ତଳେ ବସି ଭାତ ଖାଇବା ଆଶାରେ ପୁଟୁଳି ଖୋଲିବା କ୍ଷଣି ଦେଖିଲା, ସେଥିରେ ଭାତ ନାହିଁ, ଅଛି ଧାନର ଚଷୁ । ରାମନାରାୟଣ ନିଜର ପତ୍ନୀ ଉପରେ ରାଗିଗଲା ଓ ସେଠାରୁ ଘରକୁ ଫେରି ପତ୍ନୀକୁ ବେଶ୍ ଗାଳିକଲା । ''ସନ୍ୟାସୀ ଙ୍କ ମନରେ ପାରିବାରିକ ବନ୍ଧନ ଓ କାମନା ରହିବା ଅନୁଚିତ୍ ।''- ପତ୍ନୀ କହିଲେ ।

ଏହା ଶୁଣି ରାମନାରାୟଣ ସନ୍ୟାସୀ ହେବାର ଇଚ୍ଛା ତ୍ୟାଗ କଲା ।





ବେତାଳ କଥା

# ରାଜାଙ୍କ ଦାନ ପ୍ରସ୍ଥ

ନିଶା ଗରଜୁଥାଏ । ତୁହାକୁ ତୁହା ଶୀତଳ ପବନ ସାଙ୍ଗକୁ ମୃଦୁ ମୃଦୁ ବର୍ଷା । ବଣବୁଦା ଭିତରୁ ଭାସି ଆସୁଥାଏ ସାଇଁ ସାଇଁ ଶବ୍ଦ । ଶ୍ୱାନ, ଶ୍ୱାପଦଙ୍କ ରଡି ସାଙ୍ଗକୁ ଶୁଭୁଥାଏ ଅଶରୀରୀ ମାନଙ୍କର ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୋକରେ ଦିଶି ଯାଉଥାଏ ଭୟାନକ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେମାତ୍ର ବିଚଳିତ ନ ହୋଇ ସେହି ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟିଗଲେ ଏବଂ ବୃକ୍ଷାରୋହଣ ପୂର୍ବକ ଶବଟିକୁ ଉତ୍ତାରି ଆଣିଲେ । ସେ ତା'କୁ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ



କରିବାମାତ୍ରେ ଶବସ୍ଥିତ ବେତାଳ କହି ଉଠିଲା, "ରାଜନ୍ ! ମୁଁ ବୁଝି ପାରୁନାହିଁ ଯେ, ତୁମେ କେଉଁ ଲକ୍ଷ୍ୟ ସାଧନ ପାଇଁ ଅଦ୍ଧରାତ୍ରରେ, ଏହି ଭୟଙ୍କର ଶ୍ମଶାନରେ ଜଗି ରହିଛ । ଭୂତପ୍ରେତ, ହିଂସ୍ର ପଶୁ ତୁମକୁ ଆକ୍ରମଣ କରିପାରନ୍ତି । କିନ୍ତୁ ଦୁଃଖର କଥା, ଏତେବାର ଚେତାଇ ଦେବା ପରେ ବି ତୁମେ ମୋ କଥାକୁ ଗୁରୁତ୍ୱ ଦେଉ ନାହଁ । ତେବେ ତୁମର ଏ ପ୍ରକାର କଷ୍ଟର କୌଣସି ଅର୍ଥ ମୁଁ ପାଉ ନାହିଁ । ତେବେ ମନେହୁଏ ଏପରି ଏକ ଲକ୍ଷ୍ୟରୁ ଜଣା ପଡେ ତୁମେ ଗୋଟେ ବିଶେଷ କିଛି କରିବା ପାଇଁ ଚାହୁଁଛ । ଏପରି ଅନେକ ସାଧକ ଅଛନ୍ତି ସେମାନେ ତାଙ୍କର ସାଧନା ପଥର ଲକ୍ଷ୍ୟରୁ ଅଲଗା ହୋଇ ଯାଆନ୍ତି । ଏପରିକି ସେମାନଙ୍କର ଲକ୍ଷ୍ୟ କ'ଣ ସେମାନେ ବୁଝି ପାରନ୍ତି ନାହିଁ । ସେପରି ଏକ ରାଜା ସତ୍ୟବର୍ତ୍ତୀଙ୍କ କଥା ମୁ କହୁଚି । ପଥକ୍ଳାନ୍ତି ଦୂର କରିବା ପାଇଁ ଏହା ବେଶ୍ ସହାୟକ ହେବ । ଏତିକି କହି ବେତାଳ ସତ୍ୟକୀର୍ତ୍ତି ରାଜାଙ୍କ କଥା କହିବା ଆରମ୍ଭ କଲା ।

ବହୁତ ଦିନ ତଳର କଥା । ସତ୍ୟକିର୍ତ୍ତୀ ବରାଳ ଦେଶର ରାଜା ଥିଲେ । ସେ ପ୍ରକୃତରେ ଥିଲେ ଜଣେ ଭଲ ରାଜା । ସେ ବେଶ୍ ବିବେକୀ ଭାବରେ ରାଜ୍ୟ ଶାସନ କରୁଥିଲେ । ପ୍ରଜାବର୍ଗତାଙ୍କୁ ବେଶ୍ ସମ୍ମାନ କରୁଥିଲେ । ତାଙ୍କ ଶାସନ କାଳରେ ପ୍ରଜାମାନେ ବେଶ୍ ଖୁସୀରେ ଓ ଶାନ୍ତିରେ ଜୀବନ ଅତିବାହିତ କରୁଥିଲେ । ଧୀରେ ଧୀରେ ତାଙ୍କର ବୟସ ବଢ଼ିବାକୁ ଲାଗିଲା ଓ ଶାସନରୁ ତାଙ୍କ ମନ ହଟିଗଲା । ସେ ଭାବିଲେ ଏପରି କଲେ ତାଙ୍କୁ ବେଶ୍ ଭଲ ଲାଗୁଛି । ସେ ଏଥର ଭାବିଲେ ଯେ କିପରି ଶାସନରୁ ନିଜକୁ ଅଲଗା କରିନେବେ ।

ସତ୍ୟକିର୍ତ୍ତୀଙ୍କର ଚାରୋଟି ପୁଅ ଥିଲେ । ଚାରିଜଣ ଏକକୁ ଆରକୁ ବଳି ବିଦ୍ୱାନ, ବୀର ଓ ବୁଦ୍ଧିମାନ ଅଟନ୍ତି । ରାଜା ନିଜର ମନ୍ତ୍ରୀ ଓ ପାରିଷଦ ବର୍ଗଙ୍କ ସହ ଆଲୋଚନା କଲାପରେ ରାଜଚନ୍ଦ୍ରଙ୍କ ରାଜ୍ୟଅଭିଷେକ କଲେ ଓ ଶାସନ ଭାର ନିଜର ପୁଅଙ୍କୁ ଦେଲେ ।

ରାଣୀ ଏହାର ଦୁଇବର୍ଷ ପୂର୍ବରୁ ସ୍ୱର୍ଗଗାମୀ ହୋଇଥିଲେ । ଏଣୁ ରାଜା ଏକୁଟିଆ ଗ୍ରାହସ୍ଥ୍ୟ ବିଶ୍ରାମରେ ରହୁଥିଲେ । ଭକ୍ତି ମାର୍ଗରେ ବଞ୍ଚିବାକୁ ସେ ବେଶ୍ ନିଜର ଧର୍ମ ଭାବେ ଗ୍ରହଣ କରି ଖୁସୀରେ ଜୀବନ ବିତାଉଥିଲେ । ତଥାପି ତାଙ୍କର ଧ୍ୟାନ ମଝିରେ ମଝିରେ ଚହଲି ଯାଉଥିଲା । ସେ ସଦା ସର୍ବଦା ଚିନ୍ତା କରୁଥିଲେ କିପରି ତାଙ୍କର ମନ ଭକ୍ତି ଧର୍ମରେ କେନ୍ଦ୍ରିତ ରହିବ । ସେ ଏ ସମ୍ପର୍କରେ ଅନେକ ଚିନ୍ତା କଲାପରେ ନିଷ୍ପତ୍ତି କଲେ ସେ ସାଧୁ ସନ୍ନ୍ୟାସୀଙ୍କ ସଙ୍ଗରେ ଜୀବନ ଅତିବାହିତ କରିବେ ଓ ଆଶ୍ରମରେ ରହିବେ । ସେ ତାଙ୍କର ମନ କଥା ବୃହସ୍ପତି ଭଟ୍ଟ ନାମକ ଜଣେ ପଣ୍ଡିତଙ୍କୁ ଜଣାଇଲେ ।

ବୃହସ୍ପତି ଭଟ୍ଟ ରାଜାଙ୍କର ମନୋଭାବକୁ ପ୍ରଶଂସାକରି କହିଲା: ଆପଣ ଠିକ୍ ଶୁଣିଛନ୍ତି । ସାଂସାରିକ ମୋହ ମାୟାରୁ ଦୂରରେ ରହିଲେ ଏକ ମାତ୍ର ପନ୍ଥା ସାଧୁମାନଙ୍କ ସାଙ୍ଗରେ ରହିବା । ଆଧ୍ୟାତ୍ମିକତା ସାଂସାରିକ କର୍ମରୁ ମୁକ୍ତି ପାଇଁ ଏକ ମାତ୍ର ମାର୍ଗ ।

ତଥାପି ରାଜା ଅନେକ ସମୟ ଯାଏଁ ଚିନ୍ତା କଲେ । ମନକୁ ମନ କହିଲେ: ମୁଁ ସବୁ ଠିକ୍ କରୁଛି ତ ! ପରେ ବୃହସ୍ପତି ଭଟ୍ଟଙ୍କୁ କହିଲେ ଦେଖନ୍ତୁ ମୁଁ ପିଲାଟି ଦିନରୁ ରାଜପରିବାରରେ ବଢ଼ିଛି । ଭାବୁଛି ସାଧୁ ସନ୍ଥଙ୍କ ସହିତ ମୁଁ ଆଶ୍ରମରେ ଠିକ୍‌ରେ ଚଳିପାରିବି ନାହିଁ ।

ଏହା ଶୁଣି ବୃହସ୍ପତି ହସି ହସି କହିଲେ: ''ମହାରାଜ, ଆପଣ ଆଦୌ ଡରନ୍ତୁ ନାହିଁ । ପ୍ରଥମେ କେଇ ଦିନ ଆପଣଙ୍କୁ ଚଳିବା କଷ୍ଟ ଲାଗିବ । କିନ୍ତୁ ଧୀରେ ଧୀରେ ଆପଣଙ୍କର ଏପରି ପରିବର୍ତ୍ତନ ହେବ ଯେ ଆପଣ ଧ୍ୟାନ ଧାରଣାରେ ମନ କେନ୍ଦ୍ରିତ କରି ରଖିପାରିବେ । ନିଃସନ୍ଦେହରେ ଆପଣ ସଫଳ ହେବେ ।''

ବୃହସ୍ପତିଙ୍କ କଥା ଶୁଣି ରାଜାଙ୍କ ମନରେ ବିଶ୍ୱାସ ଆସିଲା । ତଥାପି ମନରୁ ସମ୍ପୂର୍ଣ୍ଣ ଦ୍ୱନ୍ଦ ଯାଉନଥାଏ । ତେଣୁ ଭଟ୍ଟ କହିଲେ: ''ଗୋଟିଏ କାମ କରନ୍ତୁ । ଆମର ରାଜଧାନୀ ପାଖରେ ରହିଥିବା ଏକ ଚମ୍ପା ବଣରେ କାର୍ତ୍ତିକେୟ ନାମରେ ଥିବା ଜଣେ ସନ୍ୟାସୀ ତର୍ପସ୍ୟା କରୁଛନ୍ତି । ସେଠାରେ କିଛି ଦିନ ଆପଣ ରହନ୍ତୁ । ସେଠାରେ ରହିବା ଫଳରେ ଆପଣଙ୍କ ମନରେ ବିଶ୍ୱାସ ଆସିବ ଯେ ଆପଣ ପ୍ରକୃତରେ ସଫଳ ହୋଇ ପାରିବେ କି ନାହିଁ ।''

ବୃହସ୍ପତି ଭଟ୍ଟଙ୍କର ଏହି ପ୍ରସ୍ତାବ ରାଜାଙ୍କୁ ଭଲ ଲାଗିଲା । ତା'ପରେ ରାଜା ଯିବାପାଇଁ ପ୍ରସ୍ତୁତି ଆରମ୍ଭ କରିଦେଲେ । ରାଜାଙ୍କର ଏହିପରି



ଚାଲିଯିବାର କଥା ଶୁଣି ପୁଅମାନେ ବିରୋଧ କଲେ ।

ରାଜା ପୁଅ ମାନଙ୍କୁ ଶାନ୍ତ କରାଇ କହିଲେ: ''ଯଦି ମତେ ସେହି ଆଶ୍ରମରେ ଭଲ ଲାଗିବ ନାହିଁ ତେବେ ମୁଁ ନିଶ୍ଚୟ ଫେରି ଆସିବି ।''

ପିତାଙ୍କଠାରୁ ଉକ୍ତ ଆଶ୍ୱାସନା ପାଇ ପୁଅ ମାନେ ଚୁପ୍ ରହିଲେ ।

ରାଜା ସତ୍ୟକିର୍ତ୍ତୀ ତାଙ୍କର କେତେଗୁଡ଼ିଏ ଚାକର ବାକର ସହିତ ଚମ୍ପକ ବଣରେ ପହଞ୍ଚିଲେ । ସେ ପହଞ୍ଚିଲା ବେଳକୁ ସନ୍ୟାସୀ କାର୍ତ୍ତିକେୟଙ୍କ କୁଟୀର ପାଖରେ ତାଙ୍କ ପାଇଁ ଏକ ପତ୍ର କୁଟୀର ନିର୍ମାଣ ହୋଇ ସାରିଥିଲା । ଉକ୍ତ କୁଟୀର ମଧ୍ୟରେ ନରମ ସେଜର ବ୍ୟବସ୍ଥା କରାଯାଇଥିଲା । ସେଜ ପାଖରେ ରହିଥିଲା ବିଭିନ୍ନ ପ୍ରକାରର ଫଳ ଓ ସାତ୍ତ୍ୱିକ ଆହାର । କୁଟୀର ସମ୍ମୁଖରେ ପୂଜା କରିବା ପାଇଁ ସମସ୍ତ ଦେବା ଦେବୀଙ୍କ ଚିତ୍ରପଟ୍ଟ ସଜ୍ଜିତ ହୋଇ



ରହିଥିଲା । ତା' ସହିତ ହାତରେ ରୁଦ୍ରାକ୍ଷ ମାଳ ଧରିବା ପାଇଁ ଥିଲା ଶତମୁଖି ରୁଦ୍ରାକ୍ଷ ।

ରାଜା ତାଙ୍କର ଦାସ ଦାସୀ ଓ ଅନୁଚରମାନଙ୍କର ପ୍ରଶଂସା କଲେ । ଯେଉଁମାନେ କି ରାଜାଙ୍କର ପହଞ୍ଚିବା ପୂର୍ବରୁ ଉକ୍ତ ସରଞ୍ଜାମ ସବୁ ରାଜାଙ୍କ ପାଇଁ ଯୋଗାଡ କରି ରଖିଥିଲେ ।

ରାତିରେ ରାଜା ଭୋଜନ କରିବା ପରେ ବିଶ୍ରାମ କଲେ ଓ ତା'ର ପରବର୍ତ୍ତୀ ଦିନ କାର୍ତ୍ତିକେୟ ଋଷିଙ୍କୁ ଦର୍ଶନ କରିବା ପାଇଁ ବାହାରିଲେ । ସେ ଦେଖିଲେ ସନ୍ୟାସୀ କାର୍ତ୍ତିକେୟ ଏକ ଆମ୍ବଗଛ ତଳେ ବସି ତପସ୍ୟା କରୁଛନ୍ତି ।

ସତ୍ୟକିର୍ତ୍ତୀ ସନ୍ୟାସୀଙ୍କର ତପ ନ ଭାଙ୍ଗିବା ପାଇଁ ଦୂରରେ ଠିଆ ହୋଇ ଅପେକ୍ଷା କଲେ । ଘଣ୍ଟା ଘଣ୍ଟା ପରେ ବିତିଗଲା କିନ୍ତୁ ତପସ୍ୱୀଙ୍କର ତପ ଭଗ୍ନ ହେଲା ନାହିଁ । ଏଥର ରାଜା ଉଦ୍ୟାନ ମଧ୍ୟରେ ବୁଲି ବୁଲି ପ୍ରକୃତିର ଦୃଶ୍ୟ ଉପଭୋଗ କରିବାକୁ ଲାଗିଲେ । କିଛି ସମୟ ପରେ ସେ ଶୁଣିବାକୁ ପାଇଲେ ଏକ ସମ୍ବୋଧନ ତାଙ୍କ ପଛରୁ କେହି ଜଣେ ଡାକୁଛନ୍ତି: ରାଜା !

ରାଜା, ପଛକୁ ବୁଲି ଦେଖିଲେ ତପସ୍ୱୀ କାର୍ତ୍ତିକେୟ ପ୍ରଶାନ୍ତ ମୁଦ୍ରାରେ ସ୍ମିତ ହସସହିତ ତାଙ୍କ ସାମନାରେ ଠିଆ ହୋଇଛନ୍ତି । ସତ୍ୟକିର୍ତ୍ତୀ ତାଙ୍କୁ ପ୍ରଣାମ କଲେ ।

ସନ୍ୟାସୀ ପଚାରିଲେ: ରାଜା ! ତୁମର ସବୁ ସେବକ ଚାଲିଗଲେଣି ? ରାଜା କହିଲେ: ''ମହାଶୟ କେବଳ ଗୋଟିଏ ମାତ୍ର ସେବକ ରହିଛି କିନ୍ତୁ ଯେତେବେଳେ ବାନପ୍ରସ୍ଥ ଜୀବନ ଆରମ୍ଭ କରିବି କେହି ରହିବେ ନାହିଁ । ଆପଣ ତ ଜାଣନ୍ତି ମୁଁ ଆଗରୁ ସୁଖରେ ଥିଲି ।'' ଏକଥା ସହିତ ରାଜା ତାଙ୍କର ଏଠାକୁ ଆସିବା କଥା ଜଣାଇଲେ ।

ସନ୍ୟାସୀ ପଚାରିଲେ: ତେବେ ଏବେ ତୁମର ଏଠାକୁ ଆସିବାପାଇଁ ସମୟ ହେଲା ?

ରାଜା କହିଲେ: ''ମୁଁ ସମଗ୍ର ଚମ୍ପକ ବଣ ବୁଲି ଦେଖିଲିଣି । ଏହା ମଧ୍ୟରେ କେତେ ସୁନ୍ଦର ସୁନ୍ଦର ବୃକ୍ଷ ରହିଛି । ଭାବୁଛି ରାଜ୍ୟବୈଦ୍ୟଙ୍କୁ ଡାକି ଏହି ବୃକ୍ଷମାନଙ୍କର ଔଷଧୀୟ ଗୁଣ ଗୁଡିକ ଯାଣିବା ପାଇଁ ଚେଷ୍ଟା କରିବି । ରାଜବୈଦ୍ୟଙ୍କୁ ଏଥିରୁ ଔଷଧ ପ୍ରସ୍ତୁତ କରିବାକୁ କହିବି ।'' ରାଜା କହିଲେ ।

ସନ୍ୟାସୀ ସବୁକଥା ଶୁଣିଲେ ଓ ରାଜାଙ୍କୁ କହିଲେ: ''ଆପଣ ବହୁ ଶାସ୍ତ୍ରରେ ଜ୍ଞାନୀ । ସୁଖ ଜୀବନରେ ଅଭ୍ୟସ୍ତ । ବର୍ତ୍ତମାନ ଆପଣ ରାଜ୍ୟକୁ ଫେରି ଯାଆନ୍ତୁ । ଚମ୍ପାବଣ ସମ୍ପର୍କରେ ଆପଣଙ୍କର ଅଧିକ ଆଗ୍ରହ ମତେ ଖୁସି କରିଛି । ରାଜା ଆଉ ଅନ୍ୟ କୌଣସି କଥା ନ ପଚାରି ରାଜ୍ୟକୁ ଫେରିଗଲେ ।

ବେତାଳ କାହାଣୀଟିକୁ କହି ରାଜା ବିକ୍ରମାର୍କଙ୍କୁ ପଚାରିଲା: ରାଜା ! ସନ୍ୟାସୀ କାର୍ତ୍ତିକେୟ

ସତ୍ୟକିର୍ତ୍ତୀଙ୍କୁ ସଫଳ ଜ୍ଞାନ ପାଇଁ ପ୍ରଶଂସା କଲେ । ବାନପ୍ରସ୍ଥ ଧର୍ମ ସମ୍ପର୍କରେ ଉପଦେଶ ଦେଲେ ଓ ପରବର୍ତ୍ତୀ ଦିନ ଘରକୁ ଫେରିଯିବାପାଇଁ କହିଲେ । ମତେ ଲାଗୁଛି ସନ୍ୟାସୀ କିଛି ଉତ୍ତମ କଲେ ନାହିଁ ।

ରାଜା ଉତ୍ତର ଦେଲେ ସନ୍ୟାସୀଙ୍କ ଧର୍ମ ସବୁକିଛି ତ୍ୟାଗ କରିବା । ଆଧ୍ୟାତ୍ମିକ ଚିନ୍ତନ ସହିତ ସେମାନେ ତପସ୍ୟା କରନ୍ତି । ସର୍ବସ୍ୱ ତ୍ୟାଗ କରନ୍ତି । ସନ୍ୟାସୀ ମାନଙ୍କର ସାଧାରଣ ଅଂହ ଭାବ ନଥାଏ । ତେଣୁ ସନ୍ୟାସୀ କାର୍ତ୍ତିକେୟ ରାଜାଙ୍କୁ ରାଜ୍ୟକୁ ଫେରିଯିବା ପାଇଁ କହିଲେ । ଯିବା ପୂର୍ବରୁ ତାଙ୍କୁ ମାର୍ଗ ଦର୍ଶନ ଦେଲେ ଓ କହିଲେ: ''ଭବିଷ୍ୟତରେ ଏଠାକୁ ଆସିବା ପୂର୍ବରୁ ଅନୁମତି ମାଗିବେ ।''

''ଏଥର ବେତାଳ ପଚାରିଲା । ତେବେ ରାଜାଙ୍କ ଆକାଂକ୍ଷା ତ ପୁରଣ ହେଲା ନାହିଁ ସେ କିପରି ବା ବାନପ୍ରସ୍ଥ ଧର୍ମ ପାଳନ କରିବେ । ମୋର ଏହି ପ୍ରଶ୍ନ ସମାଧାନ ନ କଲେ ତୁମ ମୁଣ୍ଡ ଖଣ୍ଡ ଖଣ୍ଡ ହୋଇ ଯିବ ।''

ବିକ୍ରମାର୍କ କହିଲେ: ''ମଣିଷର ସେବାହିଁ ଈଶ୍ୱରଙ୍କ ସେବା । ରାଜା ଦୀର୍ଘକାଳ ମଣିଷର ସେବାରେ ହିଁ ଲାଗିଥିଲେ କିନ୍ତୁ ବୃଦ୍ଧ ହେବା କ୍ଷଣି ଶାସନ ଭାର ସମ୍ଭାଳି ନ ପାରି ସେ ବାନପ୍ରସ୍ଥ ଧର୍ମ ପାଳନ କରିବାକୁ ଚାହିଁଲେ । ସେ ଭାବୁଥିଲେ ଏହା ହିଁ ମୁକ୍ତିର ମାର୍ଗ । କିନ୍ତୁ ତା ହିଁ ଥିଲା ତାଙ୍କର ଅଜ୍ଞାନତା । ରାଜାଙ୍କ ପାଖରେ ସଂସାରି ଗୁଣ ଭରି ରହିଥିଲା । ରାଜା ସବୁବେଳେ ପ୍ରଜା ମାନଙ୍କ ମଙ୍ଗଳ ଚିନ୍ତା କରୁଥିଲେ । ତେଣୁ ଚମ୍ପକ ବଣରେ ବୁଲିଲା ବେଳେ ସେ ଔଷଧୀୟ ବୃକ୍ଷ ଖୋଜିବାକୁ ଲାଗିଲେ । ଯେଉଁ ଔଷଧୀୟ ବୃକ୍ଷ ସାହାଯ୍ୟରେ ପ୍ରଜାମାନଙ୍କ ସେବା କରିହେବ । ସନ୍ୟାସୀ ହେବା ପାଇଁ ତାଙ୍କ ପାଖରେ କୌଣସି ଗୁଣ ନଥିଲା । ଜଣେ ଏକା ସାଙ୍ଗରେ ସନ୍ୟାସୀ ଓ ସାଂସାରି ହୋଇପାରିବେ ନାହିଁ । ତେଣୁ ସନ୍ୟାସୀ ତାଙ୍କୁ ରାଜ୍ୟକୁ ଫେରିଯିବାକୁ କହିଲେ । ରାଜା ଯେହେତୁ ଥିଲେ ଜ୍ଞାନୀ ତେଣୁ ସନ୍ୟାସୀଙ୍କ କଥାର ସୂକ୍ଷ୍ମ ଅର୍ଥକୁ ସେ ବୁଝି ପାରିଲେ । ଗୋଟିଏ ପଦ ମଧ୍ୟ ଯୁକ୍ତି ନ କରି ସେ ରାଜ୍ୟକୁ ଫେରି ଆସିଲେ । ଏତିକି ମାତ୍ର କଥା । ଏଥିରେ ସନ୍ୟାସୀ କାର୍ତ୍ତିକେୟଙ୍କ ଅହଂକାର ନାହିଁ କିମ୍ବା ରାଜା ସତ୍ୟକିର୍ତ୍ତୀଙ୍କ ଅଜ୍ଞାନତା ନାହିଁ । ତୁମେ ଅଯଥାଟାରେ ଉଭୟଙ୍କୁ ଭୁଲ୍ ବୁଝୁଛ । ମତେ ମଧ୍ୟ ଭୁଲ୍ ବୁଝିବାକୁ ପ୍ରରୋଚିତ କରୁଛ । ଏହା ତୁମର ଅଜ୍ଞାନତା ।''

ଏଇପରି ରାଜାଙ୍କର ମୌନ ଭଙ୍ଗ କରିବାରେ ସଫଳ ହୋଇ ଶବ ଓ ଶବସ୍ଥିତ ବେତାଳ ପୁନଶ୍ଚ ବୃକ୍ଷ ଡାଳରେ ଝୁଲି ପଡିଲା ।



# ଭାରତ ଆବିଷ୍କାର

## ପ୍ରଶ୍ନୋତ୍ତରୀ

ପ୍ରାୟ ଅଧିକାଂଶ ପିଲାଙ୍କ ପରୀକ୍ଷା ଏପ୍ରିଲ ମାସ ଶେଷ ସୁଦ୍ଧା ସରିଯାଇଥିବ ଏବଂ ସେମାନେ ନିଶ୍ଚିତ ଖରାଦିନର ସ୍କୁଲ ଛୁଟିକୁ ଅପେକ୍ଷା କରି ଚାହିଁ ବସିଥିବେ । ତେଣୁ, ଏହି ମାସ ଆମ୍ଭେମାନେ ସ୍ୱତନ୍ତ୍ର ଭାବରେ କୌଣସି ଏକ ବିଷୟ ନ ନେଇ ଯେ କୌଣସି ବିଷୟରୁ ପ୍ରଶ୍ନ ପଚାରିବାକୁ ଯାଉଛୁ, କ'ଣ ପ୍ରସ୍ତୁତ ?

୧. ମିଲ୍‌ଖା ସିଂ ଅଲମ୍ପିକ୍ ଖେଳର ଚାରିଶହ ମିଟର ଦୌଡ଼ ପ୍ରତିଯୋଗିତାରେ ପୃଥିବୀରେ ରେକର୍ଡ କରିଥିଲେ । ଏହି ଖେଳ କେଉଁ ମସିହାରେ ଏବଂ କେଉଁଠାରେ ହୋଇଥିଲା ?

୨. ୧୯୦୦ ମସିହାରେ ଇଡା ସ୍କୁଡ଼ର-ଦକ୍ଷିଣ ଭାରତର ଏକ ଛୋଟ ସହରରେ ଗୋଟିଏ କୋଠୋରୀ ବିଶିଷ୍ଟ ଏକ କ୍ଲିନିକ୍ ଆରମ୍ଭ କରିଥିଲେ । ବର୍ତ୍ତମାନ ଏହା ଏକ ପୃଥିବୀ ପ୍ରସିଦ୍ଧ ଚିକିତ୍ସାନୁଷ୍ଠାନରେ ପରିଣତ ହୋଇଛି । ଏହାର ନାମ କ'ଣ ଜାଣ କି ?

୩. ଗତ ବର୍ଷ ସାହିତ୍ୟ ପାଇଁ ଭାରତୀୟ ବଂଶୋଦ୍ଭବ ଭି.ଏସ୍ ନାଇପଲ ନୋବେଲ ପୁରସ୍କାର ପାଇଲେ । ୧୯୭୧ ମସିହାରେ ସେ ମଧ୍ୟ ବୁକର ପୁରସ୍କାର ପାଇଥିଲେ । ତାଙ୍କ ପୁସ୍ତକ ଗୁଡ଼ିକ ମଧ୍ୟରୁ କେଉଁ ପୁସ୍ତକଟି ତାଙ୍କୁ ଏହି ପୁରସ୍କାର ଆଣି ଦେଇଥିଲା ?

୪. ଭାରତ ଉପମହାଦେଶରେ ୧୯୩୨ ମସିହାରେ ପ୍ରଥମକରି ବ୍ୟବସାୟିକ ଭାବେ ଉଡାଜାହାଜର ଉଡ୍ଡାଣ ଆରମ୍ଭ ହୋଇଥିଲା । ସେତେବେଳେ ଜେ.ଆର.ଡି. ଟାଟା ଉଡ଼ାଜାହାଜରେ ବମ୍ବେ ଯାଇଥିଲେ । ସେ କେଉଁଠାରୁ ଯାଇଥିଲେ ?

୫. ଗୋଟିଏ ନଈ କୂଳରେ ନାସିକ୍‌କୁ ଲଗାଇ ଭାରତର ଚାରୋଟି ସ୍ଥାନରେ ମହାକୁମ୍ଭ ମେଳା ଅନୁଷ୍ଠିତ ହେଉଅଛି । ସେହି ନଈଟିର ନାମ କୁହ ?

୬. ୧୯୭୭ ମସିହାରେ ପ୍ରଥମଥର ପାଇଁ କିଏ ୟୁ.ଏନ୍‌ର ସାଧାରଣ ପରିଷଦରେ ହିନ୍ଦିରେ ଭାଷଣ ଦେଇଥିଲେ ?

୭. ମହାବଳ ବାଘ ଆମର ଜାତୀୟ ପଶୁ । ଯାହାର କି ବହୁ ପୂର୍ବରୁ ଆଉ ଏକ ପଶୁ ସହିତ ବହୁତ ସାମଞ୍ଜସ୍ୟ ରହିଛି । ସେହି ପଶୁଟିର ନାମ କ'ଣ ?

୮. ୧୯୮୨ ମସିହାରେ ଭାରତ ଆଣ୍ଟାର୍କଟିକାରେ ତା'ର ଭିତ୍ତି ପ୍ରସ୍ତର ସ୍ଥାପନ କରିଥିଲା । ସେଇ ଭିତ୍ତି ପ୍ରସ୍ତରର ନାମ କ'ଣ ?

୯. ରୋନାଲ୍‌ଡ୍ ରସ ଭାରତର ଏକ ହସ୍‌ପିଟାଲରେ ପରୀକ୍ଷା କରୁଥିବା ବେଳେ, ବ୍ୟାକ୍ଟେରିଆ ଦ୍ୱାରା ମ୍ୟାଲେରିଆର ସୃଷ୍ଟି ବୋଲି ଆବିଷ୍କାର କରିଥିଲେ । ସେ ହସ୍‌ପିଟାଲର ନାମ କ'ଣ ?

୧୦. ଦୁଇଶହ ବର୍ଷ ଭିତରେ ପ୍ରଥମଥର ପାଇଁ ୧୯୯୧ ମସିହାରେ ଭାରତର ଏକ ଆଗ୍ନେୟଗିରି ର ଉଦ୍‌ଗିରଣ ହୋଇଥିଲା । ଏହା କେଉଁଠି ହୋଇଥିଲା ?

(ଉତ୍ତର ପରବର୍ତ୍ତୀ ସଂଖ୍ୟାରେ)

## ଫେବୃୟାରୀ ମାସର ପ୍ରକାଶିତ ପ୍ରଶ୍ନର ଉତ୍ତର

୧. ମୁନିସ୍
୨. ପାର୍ବତୀ, ଗିରିଜା
୩. ଋଷି ଗୌତମଙ୍କ ସ୍ତ୍ରୀ ଅହଲ୍ୟା, ରାମ
୪. ଐରାବତ
୫. ଉଗ୍ରସେନ
୬. କାର୍‌କୋଟକ
୭. ହସ୍ତିନାପୁରର ରାଜା ଧୃତରାଷ୍ଟ୍ରଙ୍କ ସ୍ତ୍ରୀ ଗାନ୍ଧାରୀ
୮. ଦଣ୍ଡକାରଣ୍ୟ

# ଭାରତ ଗାଥା

ଏକ ମହାନ ସଭ୍ୟତାର ଝଲକ,
ଯୁଗେ ଯୁଗେ ସତ୍ୟ ପାଇଁ ଏକ ମହାର୍ଘ ଅନ୍ୱେଷଣ

## ୨୭. ସମୁଚିତ ଶିକ୍ଷାର ମାର୍ଗ



''ଜେଜେ, ତୁମେ ତା ହେଲେ କହୁଛ ପୃଥିବୀର ପ୍ରଥମ କାହାଣୀ ମାଳା 'ବୃହତକଥା' । ଚମଲେ ପ୍ରଫେସର ଦେବନାଥଙ୍କୁ ଗଭୀର ଉତ୍‌କଣ୍ଠାର ସହ ପ୍ରଚାରିଲା ।''

''ହଁ ଝିଅ,''- ପ୍ରଫେସର କହିଲେ ।

ଏଥର ଚମେଲୀ ଏକ ପତ୍ରିକା ଖୋଲି ପ୍ରଫେସରଙ୍କୁ ଦେଖାଇଲା ଓ ସେଥିରୁ ବାହାରକଲା ଏକ ସୁନ୍ଦର ପ୍ରସଙ୍ଗ । ସେଥିରେ ଏକ ପ୍ରାଚୀନ କାହାଣୀ ମାଳା ସମ୍ପର୍କରେ ସୂଚନା ପ୍ରଦାନ କରାଯାଇଥିଲା । ତାହା ଥିଲା ପଞ୍ଚତନ୍ତ୍ର । ଉକ୍ତ ପୁସ୍ତକର ଲେଖକ ସମ୍ୟକ ଧାରଣା ଦେଇ ଲେଖିଥିଲେ, ପଞ୍ଚତନ୍ତ୍ର ଭାରତର ପ୍ରଥମ କାହାଣୀ ମାଳା ।

''ଯଦି ବୃହତକଥା ପୃଥିବୀର ପ୍ରଥମ କାହାଣୀ ମାଳା ଅଟେ ତେବେ ପଞ୍ଚତନ୍ତ୍ର ଭାରତର ପ୍ରଥମ କାହାଣୀମାଳା ନିଶ୍ଚୟ । ଯଦି ପଞ୍ଚତନ୍ତ୍ର ଭାରତର ପ୍ରଥମ କାହାଣୀ ମାଳା ତେବେ ଏହା ବୃହତ୍ କଥା ଠାରୁ ଅଧିକ ପୁରୁଣା । ଏଥିରୁ ଜଣା ପଡେ ପଞ୍ଚତନ୍ତ୍ର ପୃଥିବୀର ହିଁ ସବୁଠାରୁ ପ୍ରାଚୀନ କାହାଣୀ ମାଳା ।''- ଚମେଲୀ କହିଲା ।

''ଠିକ୍ ଅଛି ଚମେଲୀ'' ଏହି ପ୍ରସଙ୍ଗର ଲେଖକ କିଛି ପରିମାଣରେ ଠିକ୍ ଓ କିଛି ପରିମାଣରେ ଭୁଲ୍ । ଯେତେବେଳେ ଗୁଣାଢ୍ୟଙ୍କ ବୃହତ୍‌କଥା ପଞ୍ଚତନ୍ତ୍ରଠାରୁ ପ୍ରାଚୀନ ବୋଲି ଗ୍ରହଣ କରାଯାଏ,



ସେତେବେଳେ ଏହାକୁ ମାନବ ଜାତିର ଏକ ନିଶ୍ଚିହ୍ନ ସମ୍ପତି ଭାବେ ସ୍ୱୀକୃତି ପ୍ରଦାନ କରାଯାଏ । ଏହାର ଏକ ଅଂଶ ହେଉଛି କଥାସରିତ ସାଗର । ଏହା ଏଗାର ଶତାବ୍ଦୀରେ ସୋମଦେବଙ୍କ ଦ୍ୱାରା ଲିଖିତ । ପଞ୍ଚତନ୍ତ୍ର ଦ୍ୱିତୀୟ ଶତାବ୍ଦୀରେ ଲିଖିତ, ଯଦି ପୂର୍ବରୁ ନୁହେଁ ।''- ପ୍ରଫେସର ଟିକେ ଚିନ୍ତାକରି କହିଲେ ।

''ଜେଜେ, ତୁମେ ଟିକେ ଚା ଖାଇ ନିଅ ଓ ଆମକୁ ଏହା ସମ୍ପର୍କରେ ବିଷଦଭାବେ ବର୍ଣ୍ଣନା କର ।''

''ଚାହା ଆସୁ, ମୁଁ ବ୍ୟସ୍ତ ନୁହେଁ ।''- ଦେବନାଥ କହିଲେ । ''ମୁଁ କହୁଥିଲି ନା, ଆମେ କଥାସରିତ୍ ସାଗର ଓ ପଞ୍ଚତନ୍ତ୍ର ମଧ୍ୟରେ କୌଣସି ଦ୍ୱନ୍ଦ ରଖିବା ନାହିଁ । ଉଭୟେ ପ୍ରଥମ । କଥାସରିତ୍ ସାଗର ପ୍ରଥମ କାହାଣୀ ମାଳା ଓ ପଞ୍ଚତନ୍ତ୍ର ପ୍ରଥମ ଲୋକ କଥା ।''- ପ୍ରଫେସର କହିଲେ ।

''ପ୍ରକୃତରେ ବିଷ୍ଣୁଶର୍ମା ମହାନ, ସେ କେତେ ସୁନ୍ଦର ଭାବରେ ଏହି କାହାଣୀଗୁଡିକୁ ଗଢିଛନ୍ତି !''

''ସତରେ ଜେଜେ, ଏହା ଏକ ମହାନ ଆହ୍ୱାନ ନୁହେଁକି ? ଆପଣ ଆମକୁ ବୃହତ୍‌କଥା ପଛରେ ଥିବା କାହାଣୀଟି କହିଥିଲେ । ତେବେ ପଞ୍ଚତନ୍ତ୍ର ପଛରେ ମଧ୍ୟ କ'ଣ କିଛି କାହାଣୀ ଅଛି ?'' ଏହି ସମୟରେ ପ୍ରଫେସରଙ୍କ ପାଇଁ ଚା' ଆସି ପହଞ୍ଚିଲା ଓ ସନ୍ଦିପ୍ ତାର କଥା ଶେଷ କଲା ।

''ସତରେ, ପଞ୍ଚତନ୍ତ୍ର ପଛରେ ମଧ୍ୟ ଏକ କାହାଣୀ ଅଛି ।''- ପ୍ରଫେସର କହିଲେ ।

ଏକ ନଗରୀ ଥିଲା, ନାମତାର ମହିଳରୂପ୍ୟ, ଯାହାକୁ ଶାସନ କରୁଥିଲେ ରାଜା ଅମରଶକ୍ତି । ସେ ଜୀବନରେ ଜଣେ ସୁଖୀ ରାଜା ହୋଇପାରିଥାନ୍ତେ ଯଦି ତାଙ୍କର ପୁତ୍ରମାନେ ହୋଇଥାନ୍ତେ ଗୁଣବନ୍ତ । ସେମାନେ ଖରାପ ପିଲା ନଥିଲେ କିନ୍ତୁ ସେମାନଙ୍କ ମଧ୍ୟରେ ଥିଲା ଏକ ଦୁର୍ଗୁଣ । ସତରେ ଏକ ଅକ୍ଷମଣୀୟ ଦୁର୍ଗୁଣ । ସେମାନେ କିଛି ଶିଖିବାକୁ ଚାହୁଁନଥିଲେ । କୌଣସି ଶିକ୍ଷକ ତାଙ୍କୁ ଶିଖିତ କରିପାରୁନଥିଲେ । ରାଜା ବରାବର ଚେଷ୍ଟା କରୁଥିଲେ ସେମାନଙ୍କୁ ପାଠ ପଢ଼ାଇବାପାଇଁ, ସବୁ କିନ୍ତୁ ବୃଥା ହୋଇଯାଉଥିଲା ।

ରାଜା ଜାଣିଥିଲେ ଏମାନଙ୍କ ମଧ୍ୟରୁ କେହି ଜଣେ ଦିନେ ସିଂହାସନ ଆରୋହଣ କରିବ । କିନ୍ତୁ କିପରି ? ସେମାନେ ଯେ ଶିଖିତ ନୁହଁନ୍ତି ! ରାଜା ଖୁବ୍ ବିବ୍ରତ ହୋଇ ରାଜ୍ୟର ସମସ୍ତ ପଣ୍ଡିତ ଓ ଜ୍ଞାନୀ ଜନଙ୍କୁ ଡକାଇ ଉପଦେଶ ମାଗିଲେ । କହିଲେ: ''ଆପଣମାନେ କୁହନ୍ତୁ ମୁଁ କିପରି ମୋର ପୁତ୍ର ମାନଙ୍କୁ ପାଠ ପଢ଼ାଇପାରିବି ।''

ପଣ୍ଡିତମାନେ ବହୁ ସମ୍ଭାବନାର ସୂଚନା ଦେଲେ କିନ୍ତୁ କୌଣସିଟି ଫଳବତୀ ହେଲାନାହିଁ । ତାଙ୍କ ମଧ୍ୟରେ ଥିଲେ ଜଣେ ପଣ୍ଡିତ ବିଷ୍ଣୁଶର୍ମା । ଜୀବନର ବହୁ ଗୁରୁତ୍ୱପୂର୍ଣ୍ଣ ସମସ୍ୟାକୁ ସେ ସହଜରେ ସମାଧାନ କରିଦେଇପାରୁଥିଲେ । ପରିଶେଷରେ

ତାଙ୍କର କଥା ରହିଲା ।

ବିଷ୍ଣୁଶର୍ମା ପ୍ରତ୍ୟେକ ଦିନ ରାଜପ୍ରାସାଦକୁ ଆସନ୍ତି, ରାଜା ତାଙ୍କର ଜ୍ଞାନ ଓ ବୁଦ୍ଧି ଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇଥିଲେ । ତେଣୁ ସେ ତାଙ୍କର ତିନି ପୁତ୍ରଙ୍କୁ ବିଷ୍ଣୁ ଶର୍ମାଙ୍କ ପାଖରେ ସର୍ମପିଦେଲେ । ତା ସହିତ ତାଙ୍କୁ ଅର୍ପଣ କଲେ ପ୍ରଚୁର ଧନ । ବିଷ୍ଣୁ ଶର୍ମା ବିନମ୍ରତାର ସହିତ ଧନକୁ ପ୍ରତ୍ୟାଖାନ କରି କହିଲେ: ''ମହାରାଜ ! ମୁଁ ଜ୍ଞାନ ବିକ୍ରୀ କରେ ନାହିଁ । ତା ସହିତ ମୁଁ ସ୍ପଷ୍ଟ କରିଦେବାକୁ ଚାହେଁ ଯେ, ଏ ବୃଦ୍ଧ ବୟସରେ ମୁଁ ଧନ ନେଇ କରିବି କ'ଣ ?''

ବିଷ୍ଣୁଶର୍ମା ତିନୋଟି ରାଜ ପୁତ୍ରଙ୍କୁ ଏକ ବିରାଟ ବଟ ବୃକ୍ଷ ତଳକୁ ନେଇଗଲେ । ସେଠାରେ ବିରାଜମାନ କରୁଥିଲା ନିର୍ଜନତା । ତିନି ରାଜପୁତ୍ରଙ୍କୁ ସାମନାରେ ବସାଇ ବିଷ୍ଣୁଶର୍ମା କହିବା ଆରମ୍ଭ କଲେ: ''ଗୋଦାବରୀ ନଦୀକୂଳରେ ଥିଲା ଏକ ଶ୍ୟାମଳୀ ବୃକ୍ଷ । ଯେଉଁଠିକୁ ଉଡି ଆସୁଥିଲେ ଦିଗ ବିଦିଗରୁ ବହୁରଙ୍ଗୀ ବିହଗ ।''

ଏଠାରେ ଆରମ୍ଭ ହେଲା ବିଷ୍ଣୁଶର୍ମାଙ୍କ କାହାଣୀ ପରେ କାହାଣୀ । କାହାଣୀରେ ଥିଲେ ସାଧାରଣ ଜନତା, ଭଲ ମନ୍ଦ, ବିଶ୍ୱାସ ଅବିଶ୍ୱାସ, ଚତୁରତା ନିର୍ବୋଧତା, ଭାଗ୍ୟ, ଦୁର୍ଭାଗ୍ୟ, ଅପରାଧ ଓ ଦଣ୍ଡ, ଚାଲାଖି ଓ ନୀରିହତା । କାହାଣୀ ଭିତରେ କାହାଣୀ, କାହାଣୀ ପରେ କାହାଣୀ । ପ୍ରାଚୀନ ଭାରତର ଅନୁପମ କାହାଣୀ ମାଳା, ଭାରତୀୟ ଶୈଳୀରେ ପରିପୂର୍ଣ୍ଣ ନଦୀର ପ୍ରବାହ ପରି ବିଷ୍ଣୁଶର୍ମାଙ୍କ ମୁଖରୁ ନିସୃତ ହେଲା । ଯାହାର ପ୍ରଭାବ ପରବର୍ତ୍ତୀ ସମୟରେ ଆରବୀୟ ରଜନୀ କାହାଣୀରେ ଦେଖିବାକୁ ମିଳେ ।

ଯେତେବେଳେ ବିଷ୍ଣୁ ଶର୍ମାଙ୍କର ସବୁତକ କାହାଣୀ ସରିଗଲା, ଦେଖାଗଲା ରାଜପୁତ୍ରମାନେ



ଅଦ୍‌ଭୁତ ଭାବରେ ଶିକ୍ଷିତ । ସେମାନେ କାହାଣୀରୁ ଶିଖିଲେ ରାଜନୀତି, ସାମାଜିକ ଜୀବନ, ମନସ୍ତତ୍ତ୍ୱ ଓ ବ୍ୟବହାର ଯାହା ଜଣେ ରାଜପୁତ୍ର ପାଇଁ ଆବଶ୍ୟକ ।

ପଞ୍ଚତନ୍ତ୍ରର ଅର୍ଥ ପାଞ୍ଚ ପ୍ରକାରର ଜ୍ଞାନ ।

ଯେତେବେଳେ ପ୍ରଫେସର ତାଙ୍କର କଥା ବନ୍ଦ କରିବାକୁ ଯାଉଛନ୍ତି, ଚମେଲୀ ମଧୁର ସ୍ୱରରେ କହିଲା: ''ଜେଜେ ତୁମେ ଆମକୁ ସେଇ ମହାନ କାହାଣୀ ମାଳାରୁ ଗୋଟିଏ କହିବ ନାହିଁ ?''

''ହଁ ଝିଅ, ମୁଁ ଆଶାକରେ ତୁମେ ପଞ୍ଚତନ୍ତ୍ରର କାହାଣୀ ସବୁ ଜାଣ । ଧରାଯାଉ, ତୁମେ ସେହି ମାଙ୍କଡର କଥା ଜାଣ ଯିଏ ରାଜାଙ୍କୁ ଏକ ମକ୍ଷିକା ମୁହଁରୁ ରକ୍ଷା କରିବାକୁ ଯାଇ ଶୋଇଥିବା ରାଜାଙ୍କ ମୁଣ୍ଡ ତାର ତୀକ୍ଷ୍ଣ ତଲୱାରରେ ଦେହରୁ ଅଲଗା କରିଦେଲା । ତୁମେ ତ ଜାଣ ସେହି କଚ୍ଛପ କଥା ଯାହାକୁ ଦୁଇଟି ହଂସ ଧରି ଆକାଶରେ ଉଡି ଯାଉଥିଲେ ଓ କଚ୍ଛପର ମୂର୍ଖତା ହେତୁ ସେ ମୁହଁ

ଖୋଲି ତଳେ କଚାଡି ହୋଇ ପଡିଲା ଓ ମରିଗଲା । ଆଉ ଗୋଟିଏ କଥା ତୁମେ ଜାଣ କି ? ତିନୋଟି ସାଙ୍ଗ ସିଂହ ମୁଖରୁ ବର୍ତ୍ତିବାର ଉପାୟ ନ ଜାଣି ମଲା ସିଂହକୁ ଜୀବନ ଦେଇ ନିଜେ ପ୍ରାଣ ହରାଇଲେ ।

"ଜେଜେ, ଆମେ ଏ ସବୁ କାହାଣୀ ଜାଣୁ । ଏସବୁ କ'ଣ ପଞ୍ଚତନ୍ତ୍ରର ?"- ସନ୍ଦୀପ୍ ପଚାରିଲା ।

"ହଁ ସେଗୁଡିକ ପଞ୍ଚତନ୍ତ୍ରର । ତେବେ ମୁଁ ତୁମକୁ ଅତି ଛୋଟ ଛୋଟ କାହାଣୀ କହିବି ଯାହା ମାନବ ସଭ୍ୟତା ପାଇଁ ଖୁବ୍ ଆବଶ୍ୟକ ହୋଇଛି । ତୁମେ ତ ନିଶ୍ଚେ ପଢିଥିବ ଦୁଇମୁଣ୍ଡିଆ ସାପ ଓ ଦୁଇଟି ମୁଣ୍ଡଥିବା ଶିଶୁ ଜନ୍ମ ହୋଇଛନ୍ତି ? ହଁ ପଞ୍ଚତନ୍ତ୍ର ଆମକୁ ସେହି ଗୋଟିଏ ପକ୍ଷୀର କଥା କୁହେ ଯାହାର ଥିଲା ଦୁଇଟି ମୁଣ୍ଡ । ମୁଣ୍ଡ ଗୁଡିକ ଏପରି ଥିଲା ଯେ ଗୋଟିଏ ଆଗକୁ ଦେଖୁଥିଲା ଓ ଅନ୍ୟଟି ପଛକୁ । ଦିନକର କଥା: ଆଗ ମୁଣ୍ଡଟି ଅମୃତର ସନ୍ଧାନ ପାଇଲା ଓ ପିଇବାକୁ ବସିବା କ୍ଷଣି ପଛ ମୁଣ୍ଡଟି କହିଲା, ଭାଇ, ମତେ କିଛି ମିଳିବ କି ? କିନ୍ତୁ ପ୍ରଥମ ମୁଣ୍ଡଟି ତାକୁ କିଛି ବି ଦେଲା ନାହିଁ । ଦ୍ୱିତୀୟ ମୁଣ୍ଡଟି ଦିନେ ବିଷର ସନ୍ଧାନ ପାଇଲା ଓ ରାଗରେ ସବୁତକ ପିଇଦେଲା । ମୁଣ୍ଡ ସିନା ଦୁଇଟି ଥିଲା କିନ୍ତୁ ପକ୍ଷୀଟି ଥିଲା ଗୋଟିଏ । ତେଣୁ ତା'ର ମୃତ୍ୟୁ ହେଲା ।"- ପ୍ରଫେସର କାହାଣୀଟି କହି ପିଲାମାନଙ୍କ ଆଡକୁ ଚାହିଁଲେ ।

"ଆମେ ବୁଝି ପାରିଲୁ ଏବେ ମଣିଷ ଜାତିର ଭାଗ୍ୟ ସେୟା । କିଛି ଲୋକ ଖରାପ କାମ କରୁଛନ୍ତି ଅନ୍ୟମାନେ ତାର ଫଳ ଭୋଗୁଛନ୍ତି ।"- ସନ୍ଦୀପ୍ କହିଲା ।

ପ୍ରଫେସର ଦେବନାଥ ଏକ ଅର୍ଥପୂର୍ଣ୍ଣ ହସ ହସିଲେ ।

"ପଞ୍ଚତନ୍ତ୍ର କାହାଣୀ ମାଳାରୁ ଯେ ଆମେ କେତେ ମୂଲ୍ୟବାନ୍ ତଥ୍ୟ ଓ ଆଦର୍ଶ ଶିକ୍ଷା କରିବାକୁ ପାଉ ତାହା ଆଜି ବି କାହାଣୀ ଗୁଡିକୁ ପଢିଲେ ଜାଣି ହୁଏ । ପ୍ରତ୍ୟେକଟି କାହାଣୀ ଆମକୁ ଜୀବନର ଏକ ମାର୍ଗ ଦର୍ଶନ କରାଏ ।" ସନ୍ଦୀପ୍ କହିଲା ।



ଭାରତୀୟ ପର୍ବ

## ଅପ୍ରେଲରେ ନବବର୍ଷ !

ଭାରତର ଅନେକ ସଂପ୍ରଦାୟର ଲୋକଙ୍କ ପାଇଁ ଇଂରାଜୀ ଅପ୍ରେଲ୍ ମାସ ଖୁବ୍ ସ୍ୱତନ୍ତ୍ର । ଦେଶର ଅନେକ ଅଞ୍ଚଳର ଲୋକଙ୍କ ପାଇଁ ଏହା ନବବର୍ଷର ସୂଚନା ବହନ କରେ । ଏହାକୁ ମଧ୍ୟ ଫସଲ ଅମଳର ପର୍ବ ଭାବେ ପାଳନ କରାଯାଏ ।

# ବୈଶାଖୀ

ପଞ୍ଜାବୀମାନଙ୍କ ପାଇଁ ବୈଶାଖୀ, ଯାହା ଅପ୍ରେଲ ୧୩, (କ୍ୱଚିତ୍ ଏହା ୧୪ ତାରିଖରେ ପଡିଥାଏ) ନୂତନ ବର୍ଷର ଆରମ୍ଭ ସହିତ ଫସଲ ଅମଳର ଉତ୍ସବ ଖୁବ୍ ଗୁରୁତ୍ୱପୂର୍ଣ୍ଣ ।

ଏହା ରବି ଫସଲ ଅମଳ ହେବା ପାଇଁ ପ୍ରସ୍ତୁତ ଥାଏ ଓ ଜମିବାଡିରେ ଗାଢ଼ ସବୁଜିମା ସାଙ୍ଗକୁ ଶସ୍ୟକେଣ୍ଡା ପରିପୂର୍ଣ୍ଣ ଥାଏ । ଗ୍ରାମାଞ୍ଚଳର ଲୋକମାନଙ୍କ ପାଇଁ ଏହା ଆନନ୍ଦମୁଖର ସମୟ । ଏପରି ସମୟକୁ ଉପଭୋଗ କରିବା ପାଇଁ ନୃତ୍ୟ, ଗୀତଠାରୁ ଅଧିକ ମନୋହର ଆଉ କ'ଣ ହୋଇପାରେ ?



ଏହି ସାମାଜିକ ପର୍ବ ଅବସରରେ ପୁରୁଷ ଓ ନାରୀମାନେ ବଳିଷ୍ଠ ଓ ଚିତ୍ତାକର୍ଷକ *ଭାଙ୍ଗଡା* ଓ *ଗିଦା* ନୃତ୍ୟ କରିଥାନ୍ତି ।

ଲୋକମାନେ ପର୍ବ ସମୟରେ ପାରମ୍ପରିକ ଉଜ୍ଜ୍ୱଳ ରଙ୍ଗର ପୋଷାକ ପରିଧାନ କରିଥାନ୍ତି । ପ୍ରଥା ଅନୁସାରେ ଏହି ପର୍ବ ନଦୀ କୂଳ ମାନଙ୍କରେ ପାଳନ କରାଯାଏ । ଲୋକମାନେ ନୂତନ ଗହମର ଅଟାରେ ପ୍ରସ୍ତୁତ ରୁଟି ସହିତ ଦେଶୀ ଘିଅ ଓ ଗୁଡ ଖାଆନ୍ତି । ସାମଗ୍ରିକ ଭାବରେ ଏହା ରୁଚିପୂର୍ଣ୍ଣ ଭୋଜନ ଓ ଆମୋଦ ପ୍ରମୋଦର ଦିନଟିଏ । ଗୋଟିଏ ସ୍ଥାନରେ ନିଆଁ ଜଳାଇ, ତା'ର ଚାରିପଟେ ନୃତ୍ୟ କରାଯାଏ ।

ଶିଖ୍ ମାନଙ୍କ ପାଇଁ ବୈଶାଖୀ ହେଉଛି ଖାଲସା ଆନ୍ଦୋଳନର ଆରମ୍ଭର ସ୍ମାରକୀ । ଏହି ଦିବସରେ ୧୬୯୯ ଖ୍ରୀଷ୍ଟାବ୍ଦରେ ଦଶମ ଶିଖ୍ ଗୁରୁ ଗୁରୁ ଗୋବିନ୍ଦ ସିଂହ 'ଖାଲସା' ବା ଶିଖ ଭାତୃତ୍ୱର ଆନ୍ଦୋଳନ ଆରମ୍ଭ କରିଥିଲେ ।

# ଗଡି ପାଡଓ୍ୱା



ଗଡି ପାଡଓ୍ୱା ମହାରାଷ୍ଟ୍ରର ଅଧିବାସୀମାନଙ୍କର ନବବର୍ଷ । ଚୈତ୍ର ମାସର ପ୍ରଥମ ଦିବସରେ ଏହା ପାଳିତ ହୁଏ । ଏହା ମଧ୍ୟ ଏକ କୃଷିଭିତ୍ତିକ ପର୍ବ । ଏହି ଅବସରରେ ନୂତନ କାମ ଆରମ୍ଭ କରାଯାଏ ।

ଏହି ପର୍ବରେ ଲୋକମାନେ ବିଜୟର ପ୍ରତୀକ ସ୍ୱରୂପ ଗୋଟିଏ ଗଡିକୁ ତାଙ୍କ ଘରର ଅଗଣାରେ ପୂଜା କରନ୍ତି । ଏହି ଗଡି ହେଉଛି ଗୋଟିଏ ସ୍ତମ୍ଭ ଉପରେ ସ୍ଥାପିତ ହୋଇଥିବା କଳସ । କଳସରେ ରେଶମୀ କନା ଗୁଡା ହୋଇଥାଏ ଓ ଏହାକୁ ଗେଣ୍ଡୁ ଫୁଲ ଓ ଆମ୍ବପତ୍ରରେ ସୁସଜ୍ଜିତ କରା ଯାଇଥାଏ । ସେମାନେ ବିଶ୍ୱାସ କରନ୍ତି ଯେ ଗଡି ସବୁ ପ୍ରକାରର ଅନିଷ୍ଟକୁ ବିନାଶ କରିବ ଓ ସୁଖ ସମୃଦ୍ଧି ଆଣିଦେବ । ଏହାକୁ ମଧ୍ୟ ପ୍ରକୃତିର ପରିପୂର୍ଣ୍ଣତାର ଉପାସନା ଭାବେ ଗ୍ରହଣ କରାଯାଇପାରେ । ଗଡି ସୂର୍ଯ୍ୟ ଉଦୟ ଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଅଗଣାରେ ରଖାଯାଏ ।

ଲୋକମାନେ ରଙ୍ଗ ବେରଙ୍ଗର ପୋଷାକ ପିନ୍ଧି ଭୋଜି କରନ୍ତି । ଘରର ବାହାରକୁ ସୁନ୍ଦର ରଙ୍ଗୋଲିରେ ସଜାଯାଇଥାଏ । ଖୁବ୍ ପ୍ରତ୍ୟୁଷରୁ ଲୋକମାନେ ନିମ୍ବପତ୍ର, କୁଆଁଣି, ତେନ୍ତୁଳି ଓ ଗୁଡରୁ ପ୍ରସ୍ତୁତ ଏକ ପ୍ରକାରର ଚଟଣି ଖାଆନ୍ତି । ଏହି ଚଟଣି ରକ୍ତ ପରିଷ୍କାର କରିବାରେ ସାହାଯ୍ୟ କରେ ।

# ନବ ବର୍ଷ

ବୈଶାଖ ମାସର ପ୍ରଥମ ଦିବସକୁ ବଙ୍ଗାଳୀମାନେ ନବ ବର୍ଷର ପ୍ରଥମ ଦିନ ଭାବେ ଗ୍ରହଣ କରି ଖୁବ୍ ଆନନ୍ଦ ଉଲ୍ଲାସର ସହ ଏହାକୁ ପାଳନ କରନ୍ତି । ଏହାକୁ ମଧ୍ୟ କୁହାଯାଏ ପୋଲିଆ ବୈଶାଖ । ଘର ସମ୍ମୁଖରେ ସୁନ୍ଦର ରଙ୍ଗୋଲି ପକାଯାଏ ଓ ତା' ଉପରେ ପବିତ୍ର ଜଳପୂର୍ଣ୍ଣ ମାଠିଆ ସ୍ଥାପନ କରାଯାଏ ଓ ପଇଡ, ଆମ୍ବପତ୍ରରେ ସଜାଇ ଦିଆଯାଏ । ଏହି ପର୍ବରେ ସେମାନେ ଲୋଭନୀୟ ମିଷ୍ଟାନ୍ନ ସାମଗ୍ରୀ ପ୍ରସ୍ତୁତ କରନ୍ତି ।

# ରଙ୍ଗୋଲି ବିହୁ



ଆସାମର ଲୋକ ମାନଙ୍କର ନବବର୍ଷ ରଙ୍ଗୋଲି ବିହୁ ଅପ୍ରେଲ୍‌ର ମଧ୍ୟଭାଗ ବେଳକୁ ପାଳିତ ହୁଏ । ଏହାକୁ ନୂତନ କୃଷି ବର୍ଷର ଆରମ୍ଭ ଭାବେ ଗ୍ରହଣ କରି, ବୁଣାବୁଣିର ସମୟ ଭାବେ ପାଳନ କରାଯାଏ । ଏହାକୁ ମଧ୍ୟ ବୋହାଗ୍ ବିହୁ କୁହାଯାଏ । ଯାହା କି ଆସାମରେ ପାଳିତ ହେଉଥିବା ଅନେକ ବିହୁ ମଧ୍ୟରେ ସବୁଠାରୁ ଚିତ୍ତାକର୍ଷକ ହୋଇଥାଏ ।

ଆନନ୍ଦ ଓ ଉଲ୍ଲାସ ଏହି ପର୍ବର ମୁଖ୍ୟ ଭିତ୍ତି । କିଶୋର ବାଳକ, ବାଳିକାମାନେ ପାରମ୍ପରିକ ବିହୁଗୀତ ଗାନ କରି ଓ ଲୋକ ସଂଗୀତର ତାଳେ ତାଳେ ଗ୍ରାମର ଲୋକମାନଙ୍କ ଆଗରେ ପ୍ରସିଦ୍ଧ ବିହୁ ନୃତ୍ୟ ପରିବେଷଣ କରନ୍ତି । ଏହି ନୃତ୍ୟ ସହିତ ଢୋଲ, ମାଦଳ ପେପା ପ୍ରଭୃତି ପାରମ୍ପରିକ ବାଦ୍ୟ ବ୍ୟବହାର କରାଯାଏ । ପେପା ହେଉଛି ମଇଁଷିର ଶିଙ୍ଗରୁ ପ୍ରସ୍ତୁତ ଏକ ପ୍ରକାରର ନଳୀ ।

# ଭିଶୁ



ମାଲୟି ଲୋକଙ୍କର ନବବର୍ଷ ହେଉଛି ଭିଶୁ । ଏହା ପ୍ରଥମ ମାଲାୟାଲାମ୍ ମାସର ପ୍ରଥମ ଦିବସ ମେଦାମ (ଅପ୍ରଲ-ମେ)ରେ ପଡିଥାଏ । ଏହି ପର୍ବରେ *ଭିଶୁକାନି* ବା ବିଶିଷ୍ଟ ଦର୍ଶନ ହେଉଛି ଗୁରୁତ୍ୱପୂର୍ଣ୍ଣ ତତ୍ତ୍ୱ ।

ଯେଉଁସବୁ ଜିନିଷ ସମୃଦ୍ଧିର ପ୍ରତୀକ ଯଥା, ନୂଆ ଚାଉଳ, ନୂତନ ବସ୍ତ୍ର, ସୁବର୍ଣ୍ଣ, ପାନପତ୍ର, ଦର୍ପଣ, ଗୁଆ, କାକୁଡି, 'କୋନ୍ନା' ନାମକ ହଳଦିଆ ଫୁଲ (cassia fistula), ପବିତ୍ର ଧର୍ମଗ୍ରନ୍ଥ, ଓ ମୁଦ୍ରା ଆଦିକୁ ଗୋଟିଏ ପାତ୍ରରେ ରଖାଯାଏ, ଯାହାକୁ କୁହାଯାଏ *'ଉରୁଳି'* । ଏହା ହେଉଛି *କାନି* ବା ଦର୍ଶନ । ଗୃହର ବରିଷ୍ଠ ମହିଳା ସଦସ୍ୟମାନେ ଭିଶୁର ଗୋଟିଏ ରାତ୍ରି ଆଗରୁ *କାନି* ସଜାଡନ୍ତି । ଏହା ବିଶ୍ୱାସ କରାଯାଏ ଯେ, ବଡି ସକାଳୁ ଯିଏ

ଏହାକୁ ଦର୍ଶନ ଯେ କରେ ତା' ପାଇଁ ସେହି ବର୍ଷ ଖୁବ୍ ସମୃଦ୍ଧିମୟ ହୁଏ ।

ଲୋକମାନେ *କୋଡି ବସ୍ତ୍ରମ୍* ବା ନୂତନ ବସ୍ତ୍ର ପରିଧାନ କରନ୍ତି । ପରିବାରର ମୁଖିଆ ଲୋକମାନେ ତା'ଙ୍କଠାରୁ ଆଶୀର୍ବାଦ ଗ୍ରହଣ କରୁଥିବା ଲୋକମାନଙ୍କୁ ମିଠା ଓ ପଇସା ଦେଇଥାଆନ୍ତି । ଏହା ମଧ *ଭିଶୁକାଇନିତମ୍* ଭାବେ ଜଣାଶୁଣା । କନିଷ୍ଠ ସଦସ୍ୟମାନେ ଏହି ପର୍ବକୁ ଖୁବ୍ ଭଲ ପାଆନ୍ତି ଓ ବଡ ଲୋକମାନଙ୍କ ପାଖକୁ ଯାଇ ଅର୍ଥ ସଂଗ୍ରହ କରନ୍ତି । ସଂଗୃହୀତ ଅର୍ଥ *ଭିଶୁଭେଲା* ନାମକ ମେଳାରେ ସେମାନେ ଖର୍ଚ୍ଚ କରନ୍ତି । ଏହା ହେଉଛି ଉତ୍ତମ ଭୋଜନ ଓ ପରିପୂର୍ଣ୍ଣ ଆନନ୍ଦର ଦିବସ ।

# ପୁଥାଣ୍ଡୁ



ଚୈତ୍ର ମାସର ଆରମ୍ଭ ବା ଅପ୍ରେଲ ୧୪କୁ ତାମିଲ ମାନେ ନୂତନ ବର୍ଷର ଆରମ୍ଭ ଭାବେ ପାଳନ କରନ୍ତି । ଏହାକୁ ମଧ *ବର୍ଷପିରାପୁ* ବା ନବ ବର୍ଷର ଜନ୍ମଦିନ କୁହାଯାଏ ।

ଲୋକମାନେ ଏହି ଦିନଟିକୁ ବିଶିଷ୍ଟ ଦର୍ଶନ ବା *କାନି*ରେ ଆରମ୍ଭ କରନ୍ତି । ଅନେକ ଗୁଡିଏ ଉତ୍ତମ ଜିନିଷକୁ ଏକାଠି କରାଯାଇଥାଏ ସୁବର୍ଣ୍ଣ, ରୌପ୍ୟ, ଫଳ, ପନିପରିବା, ପାନପତ୍ର, ଗୁଆ, ଫୁଲ, ଚାଉଳ ଓ ନଡିଆ । ଏହା ମଧ ବିଶ୍ୱାସ କରାଯାଏ ଯେ *କାନି* ଦର୍ଶନ କଲେ ବର୍ଷସାରା ସୁଖ ସମୃଦ୍ଧିରେ କଟେ, ସୌଭାଗ୍ୟ ପ୍ରାପ୍ତି ହୁଏ ।

ଏହି ଦିବସରେ, ଲୋକମାନେ ମନ୍ଦିରକୁ ଯାଆନ୍ତି

ଓ *ପଞ୍ଚାଙ୍ଗମ୍* ପାଠ କରନ୍ତି । ଏହି ପର୍ବର ବିଶେଷତ୍ୱ ହେଉଛି ମଧ୍ୟାହ୍ନ ଭୋଜନରେ *ମାଙ୍ଗାଇ ପାଛାଡି* ବା କଞ୍ଚା ଆମ୍ବ, ନୂଆ ନିମ୍ବଫୁଲ ଓ ଗୁଡରୁ ପ୍ରସ୍ତୁତ ଏକ ପ୍ରକାରର ଖାଦ୍ୟ ଗ୍ରହଣ କରାଯାଏ । ଏହା ମିଠା, ପିତା ଓ ଖଟା ସ୍ୱାଦ ବିଶିଷ୍ଟ ହୋଇଥାଏ । ଲୋକମାନଙ୍କ ମତରେ ଏହା ଜୀବନରେ ବିଭିନ୍ନ ଉତ୍‌ଥାନ, ପତନକୁ ସୂଚନା ଦିଏ ।

ଗୃହ ସମ୍ମୁଖରେ ଚାଉଳ ଚୁନାରେ କୋଲମ୍ ସଜାଯାଏ ଓ ଆମ୍ବପତ୍ରର ତୋରଣ ବନ୍ଧାଯାଇଥାଏ । ଏହି ପର୍ବ ଆନନ୍ଦ, ଉଲ୍ଲାସ ଓ ଭୋଜନ, ଭୋଗର ପ୍ରତ୍ୟକ ଭାବେ ପାଳନ କରାଯାଏ ।

# ଉଗାଡି

ଆନ୍ଧ୍ରପ୍ରଦେଶ ଓ କର୍ଣ୍ଣାଟକରେ ଉଗାଡି ହେଉଛି ନବବର୍ଷର ଦିବସ । ତେଲୁଗୁ ନବବର୍ଷ ଚୈତ୍ର ଶୁଦ୍ଧ ପଞ୍ଚମୀରେ ପାଳନ କରାଯାଏ । ଏହା ମଧ୍ୟ ବସନ୍ତ ଋତୁର ଆରମ୍ଭ କାଳ । ତେଣୁ ଚାରିଆଡେ ଫୁଲ ଫୁଟି ଶୋଭା ପାଉଥାଏ ।

ଉଗାଡି ଶବ୍ଦର ଅର୍ଥ 'ଯୁଗା' ବା ସମୟ ଓ 'ଆଡିର ଅର୍ଥ ହେଉଛି ଆରମ୍ଭ । ଏକ ଲୋକକଥା ଅନୁସାରେ ହିନ୍ଦୁ ପୁରାଣର ସୃଷ୍ଟିକର୍ତ୍ତା ବ୍ରହ୍ମା ଏହି ଦିବସରେ ସୃଷ୍ଟିର ସର୍ଜନା ଆରମ୍ଭ କରିଥିଲେ । ତେଣୁ ଏହି ଦିନଟି ହେଉଛି ବର୍ଷର ପ୍ରଥମ ଦିନ । ଏହି ଦିବସରେ ନୂତନ କର୍ମ ବା ଉଦ୍ୟୋଗ ଆରମ୍ଭ କରାଯାଇଥାଏ ।



ଗୃହ ଗୁଡିକୁ ଆମ୍ବପତ୍ରର ତୋରଣରେ ସୁସଜ୍ଜିତ କରାଯାଇଥାଏ । ଲୋକମାନେ ନୂତନ ବସ୍ତ୍ର ପରିଧାନ କରି ମନ୍ଦିର ଦର୍ଶନ କରନ୍ତି ଓ ସନ୍ଧ୍ୟା ସମୟରେ *ପଞ୍ଚାଙ୍ଗମ୍* ପାଠ କରନ୍ତି ।

ଲୋକମାନେ *ଉଗାଡା ପାଛାଡି,* ଯାହା ହେଉଛି ସଜ ତେନ୍ତୁଳି, ଲଙ୍କା, ଲୁଣ, ନିମ୍ବଫୁଲ, ଗୁଡ ଓ କଞ୍ଚା ଆମ୍ବର ଖଣ୍ଡରେ ପ୍ରସ୍ତୁତ ଏକ ପ୍ରକାର ଖାଦ୍ୟ ପ୍ରସ୍ତୁତ କରନ୍ତି ଓ ଖାଇଥାଆନ୍ତି ।

# ଚତୁର ବୀରବଲ



ସମ୍ରାଟ ଆକବର ତା'ଙ୍କର ପ୍ରଜାମାନଙ୍କ ନିମନ୍ତେ କରିଥିବା ବିଭିନ୍ନ ସଂସ୍କାର ପାଇଁ ସୁପ୍ରସିଦ୍ଧ । ଥରେ ତା'ଙ୍କୁ ଗୋଟିଏ ସନ୍ଦେହ ଘାରିଲା ଯେ, ପ୍ରକୃତରେ ତା'ଙ୍କ ପ୍ରଜାମାନେ କେତେ ସାଧୁ, ସେ କିପରି ଜାଣିବେ ? ଦିନେ ସନ୍ଧ୍ୟା ସମୟରେ ଦୁହେଁ ଏକାଠି ଥିବାବେଳେ ସେ ତା'ଙ୍କ ପ୍ରିୟ ପାରିଷଦ ବୀରବଲଙ୍କ ପାଖରେ ଏହା କହିଲେ ।

''ଶେହନ୍‌ଶାହା ! ଏହା ଖୁବ୍ ସହଜରେ ଜାଣି ହେବ !'' ବୀରବଲ ତା'ଙ୍କର ମୁଣ୍ଡକୁ ଆଉଁସି କହିଲେ: ''ପ୍ରଥମେ ଆମେ ଘୋଷଣା କରିବା ଯେ, ଦରିଦ୍ର ଲୋକମାନଙ୍କ ପାଇଁ ଏକ ଭୋଜି ସକାଶେ ପ୍ରତ୍ୟେକ ପ୍ରଜା ଗୋଟିଏ ପାତ୍ର ଦୁଗ୍ଧ ଦାନ କରିବେ ।





''କିନ୍ତୁ ଏଥିରୁ ଆମେ କିପରି ଜାଣିବା କିଏ ସାଧୁ । କିଏ ଅସାଧୁ । ସମ୍ରାଟ ଦ୍ୱନ୍ଦରେ ପଡି ପଚାରିଲେ । ବରବଲ କେବଳ ଏତିକି କହିଲେ । ''ମଣିମା, ମୋ କଥା ଅନୁସାରେ କାମ ହେଉ, ବଳେ ଉତ୍ତର ମିଳିଯିବ ।''

ସମ୍ରାଟ ଏହିପରି ଏକ ଘୋଷଣା କରାଇଲେ: ପ୍ରତ୍ୟେକ ଗୋଟିଏ ପାତ୍ର ଦୁଗ୍ଧ ଆଣି ଏକ ନିର୍ଦ୍ଦିଷ୍ଟ ଦିବସରେ ରାଜ ପ୍ରାସାଦର ସମ୍ମୁଖରେ ଥିବା ବିରାଟ ପାତ୍ରରେ ଢାଳିବେ ।





ନିର୍ଦ୍ଦିଷ୍ଟ ସମୟ ଆସି ପହଞ୍ଚିଲା । ଦୁଗ୍ଧପାତ୍ର ଧରି ଲୋକମାନେ ଲମ୍ବା ଧାଡି କଲେ ଓ ସେହି ପାତ୍ରରେ ଦୁଗ୍ଧ ଅଜାଡିଲେ ।



ଶେଷ ଲୋକଟି ଦୁଗ୍ଧ ଢାଳି ସାରିବା ପରେ, ପାତ୍ରରେ ଘୋଡଣି ଢଙ୍କା ହୋଇଗଲା ଓ ତା'କୁ ସଯତ୍ନେ ଆକବର, ବୀରବଲ ଓ ଆଉ କେତେକ ପାରିଷଦଙ୍କ ସମ୍ମୁଖକୁ ନିଆଗଲା ।



ବୀରବଲ ସମ୍ରାଟଙ୍କୁ ଚାହିଁଲେ ଓ ତା'ଙ୍କଠାରୁ ସମ୍ମତିର ସୂଚନା ପାଇ ଘୋଡଣି କାଢିଦେଲେ ଓ ସମସ୍ତଙ୍କୁ ଦେଖାଇବା ପାଇଁ ଗୋଟିଏ ଡଙ୍କି ଦୁଗ୍ଧ ବାହାର କଲେ ।



''ଜଳ !'' ସମ୍ରାଟ ଚମକି ପଡି କହିଲେ ''ହଁ ମଣିମା, ଏହି ଜଳ ଯେପରି ସ୍ୱଚ୍ଛ, ସେହିପରି ଆମ ଲୋକମାନଙ୍କର ସାଧୁତାର ନମୁନା ମଧ୍ୟ ଖୁବ୍ ସ୍ପଷ୍ଟ ଭାବେ ମିଳିଗଲା ।'' କହିଲେ ବୀରବଲ ।



## ଶକ୍ତ ଗୁଡି

କିଏ କେଉଁଠି ଉପରେ ଉଡୁଥାଏ, ମାତ୍ର ତଳେ ଥାଇ ତା'କୁ ନିୟନ୍ତ୍ରଣ କରାଯାଏ ? ତୁମେ ଜାଣି ପାରୁନ ? ସହଜ କଥା ! ଗୁଡି, ନିଶ୍ଚୟ ! ସବୁ ଗୁଡି-ଉଡାଳି କହନ୍ତି ଯେ, ସେମାନଙ୍କ ଗୁଡିର ସୁତା ବେଶ୍ ମଜବୁତ । ସେଥିରେ କାଚ ଗୁଣ୍ଡ ଘଷାଯାଇ ଶକ୍ତ କରାଯାଇଛି, ଯେମିତି ସହଜରେ ଗୁଡି କଟି ପାରିବ ନାହିଁ ।

କାହାଣୀ କହେ, ୧୮୦୦ ଶତାବ୍ଦୀ କାଳରେ ଜୟପୁରର ମହାରାଜ ସବାଇ ରାମସିଂହ ଦ୍ୱିତୀୟ ଓ ତା'ଙ୍କ ଗୁଡି ଓସ୍ତାଦ ରାଜପ୍ରାସାଦର ବାରଣ୍ଡା ଉପରେ ଠିଆ ହୋଇ ଗୁଡି ଉଡାଉଥିଲେ । ସେମାନଙ୍କର ଗୁଡି ସହିତ ଆଉ ଜଣକର ଗୁଡିର ତୀବ୍ର ପ୍ରତିଯୋଗିତା ଲାଗିଗଲା । ଶେଷକୁ ରାଜାଙ୍କର ଗୁଡି ପ୍ରତିଦ୍ୱନ୍ଦିର ଗୁଡି ଦ୍ୱାରା କଟିଗଲା ।



ରାଜା କୌତୁହଳୀ ହୋଇ ସେମାନଙ୍କର ପରିଚୟ ଜାଣିବାକୁ ଚାହିଁଲେ । ସେମାନେ ଥିଲେ ଚୁଡାମଣି ଓ କାଲୁରାମ ନାମରେ ଦୁଇଭାଇ । ସେମାନେ କୁମ୍ଭକାର ସଂପ୍ରଦାୟର ଓ ସେମାନେ *ମାଂଜ*ରେ କାଚଗୁଣ୍ଡ ଦେଇ ଶକ୍ତ କରିବାର କୌଶଳ ଜାଣିଥିଲେ । ତେଣୁ ଯେତେବେଳେ ବି ତୁମେ ଅନ୍ୟ ଗୁଡିକୁ କାଟି ଦେଇ ପାରିବ, ସେତେବେଳେ ଚୁଡାମଣି ଓ କାଲୁରାମକୁ ଧନ୍ୟବାଦ ଦେବ ।

## ମହିଳା ପୂଜକ

ଓଡିଶାର ଏହି ଦେଉଳ ଅସାଧାରଣ, ଓ ଏହାର ଉଚ୍ଚତା ସର୍ବାଧିକ କିମ୍ବା ଏଠାରେ ପୃଥିବୀର ସବୁଠାରୁ ମୂଲ୍ୟବାନ ପ୍ରତିମା ସ୍ଥାପିତ ହୋଇନାହାନ୍ତି । ଏଠାକାର ବିଶେଷତ୍ୱ ହେଉଛି- ମନ୍ଦିରର ପୂଜକମାନେ ମହିଳା ।



ଓଡିଶାର ଉପକୂଳର କେନ୍ଦ୍ରାପଡା ଜିଲ୍ଲାର ସାତଭାୟାଠାରେ ତେରଶହ ବର୍ଷର ପୁରୁଣା ପଞ୍ଚୁବରାହୀ ମନ୍ଦିରରେ ମହିଳାମାନେ ମନ୍ଦିରର ପୂଜାପାଠ କରନ୍ତି । ଏଠାରେ ପୁରୁଷ ଲୋକମାନେ ଦେବୀଙ୍କ ପୂଜାସ୍ଥଳୀକୁ ପ୍ରବେଶ କରିବାପାଇଁ ନିଷେଧାଜ୍ଞା ରହିଛି । ଦେବୀଙ୍କର ସମସ୍ତ ଉପଚାର ସ୍ଥାନୀୟ ମତ୍ସଜୀବି ସଂପ୍ରଦାୟର 'ଦଳେଇ' ପରିବାରର ମହିଳାମାନଙ୍କ ଦ୍ୱାରା ସମ୍ପନ୍ନ ହୁଏ ।

# କଳାପ୍ରବଣ ପୂର୍ବପୁରୁଷ





ତୁମେ କେବେ ଛୋଟ ପିଲାମାନଙ୍କୁ କାନ୍ଥରେ ଗାରୋଉ ଥିବାର ଲକ୍ଷ୍ୟ କରିଛ ? ଆଉ କେବେ ସେମାନଙ୍କୁ ଏପରି କରୁଥିବାର ଦେଖିଲେ, ଗାଳି ଦେବନାହିଁ । କାରଣ ସେମାନେ ତା'ଙ୍କ ପୂର୍ବପୁରୁଷଙ୍କ କାମକୁ ଦୋହରାଉଛନ୍ତି । କିଛି ଭୁଲ୍ କରୁନାହାନ୍ତି । ତୁମେ ମାନେ ଜାଣି ଆଶ୍ଚର୍ଯ୍ୟ ହେବ ଯେ, ଆମ ପୂର୍ବପୁରୁଷମାନେ କାଗଜରେ ନୁହେଁ ଗୁମ୍ଫାର କାନ୍ଥମାନଙ୍କରେ ଲେଖୁଥିଲେ । ଚିତ୍ର ଆଙ୍କୁଥିଲେ ।

ମଧ୍ୟପ୍ରଦେଶର ଭୋପାଳ ନିକଟରେ ବିନ୍ଧ୍ୟ ପର୍ବତମାଳାର ଭୀମବେଟ୍‌କା ଠାରେ ଏହିପରି ଖୋଦିତ ଓ ଚିତ୍ରିତ ହୋଇଥିବା ଅନେକ ପାହାଡିଆ ଗୁମ୍ଫା ଦେଖିବାକୁ ମିଳେ । ଐତିହାସିକଙ୍କ ମତରେ ଏହି ସବୁ ଚିତ୍ରାବଳୀ ଦଶହଜାର ବର୍ଷ ତଳର ଅଟେ ।

ଚିତ୍ର ଗୁଡିକରେ ସେହି ସମୟର ନିତି ଦିନିଆ ଜୀବନର ଘଟଣାବଳୀ ଯେପରିଃ ଶିକାର, ମହୁସଂଗ୍ରହ, ମୁଖାନୃତ୍ୟ, ପଶୁ ଲଢ଼େଇ, ମନୁଷ୍ୟ ଓ ଅସ୍ତ୍ରଶସ୍ତ୍ର ଇତ୍ୟାଦିର ସୂଚନା ରହିଛି, ବହୁ ପ୍ରକାରର ପଶୁ, ସିଂହ, ବାଘ, ହରିଣ, ବଣ୍ୟ ସମ୍ବର ପ୍ରଭୃତିର ଚିତ୍ର ମଧ୍ୟ ରହିଛି । ଚିତ୍ର ଗୁଡିକରେ ମୁଖ୍ୟତଃ ଧଳା ଓ ନାଲି ରଙ୍ଗ ବ୍ୟବହାର କରାଯାଇଛି ଓ ଠାଏ, ଠାଏ ସବୁଜ ଓ ହଳଦିଆ ରଙ୍ଗ ମଧ୍ୟ ଅଛି ।

## ମଲ୍ଲ-ସ୍ତମ୍ଭ

ଦ୍ୱାଦଶ ଶତାବ୍ଦୀରେ ଭାରତର କେତେକ ସ୍ଥାନରେ ଏକ ବିଚିତ୍ର ଧରଣର କ୍ରୀଡା *ମଲ୍ଲ-ସ୍ତମ୍ଭ* ପ୍ରଚଳିତ ଥିଲା । ଏହା ହେଉଛି ଏକ ପ୍ରକାରର କୁସ୍ତି, ଯେଉଁଥିରେ ଦୁଇଜଣ ପ୍ରତିଦ୍ୱନ୍ଦୀ ଅନ୍ୟ ଦୁଇଜଣଙ୍କ କାନ୍ଧରେ ବସି କୁସ୍ତି କରନ୍ତି । ଆଉ ଯେଉଁ ଦୁଇଜଣ କାନ୍ଧରେ ବସାନ୍ତି ସେମାନେ ବିନା ଦ୍ୱିଧାରେ ଖେଳସାରା ଅଣ୍ଟାଏ



ପାଣିରେ ଠିଆ ହୋଇଥାଆନ୍ତି । ଏବେ ଟିକେ ଭାବିଲ, ଏହି ଦ୍ୱିତୀୟ ଦୁଇଜଣ କେତେ ଅସୁବିଧାରେ ଥିବେ ? ଅବଶ୍ୟ, ଯେତେବେଳେ ତା'ଙ୍କର କୁସ୍ତି ଖେଳାଳୀ ଦୁଇଜଣ 'ସୁମୋ' ଖେଳାଳୀଙ୍କ ପରି ଶହେ ତିରିଶ କେ.ଜି.ରୁ ଅଧିକ ଓଜନ ହୋଇଥିବେ ।

## କର୍ଣ୍ଣାଟକର ଲୋକକଥା

# ମଲ୍ଲିକା କୁମାରୀ

ଦାକ୍ଷିଣାତ୍ୟ ମାଳଭୂମିର ପଶ୍ଚିମ ପାର୍ଶ୍ୱରେ ପ୍ରାୟ ୧୯୨,୦୦୦ ବର୍ଗ କି.ମି. ଅଞ୍ଚଳରେ କର୍ଣ୍ଣାଟକ ରାଜ୍ୟ ଅବସ୍ଥିତ । ଏହାର ପୂର୍ବରେ ଆନ୍ଧ୍ରପ୍ରଦେଶ, ଉତ୍ତରରେ ମହାରାଷ୍ଟ୍ର, ଦକ୍ଷିଣରେ ତାମିଲନାଡୁ ଓ କେରଳ ରହିଛି । ଏହାର ଜନସଂଖ୍ୟା ୫୨ ଲକ୍ଷ ଓ ଭାରତ ଭୂଖଣ୍ଡର ଷୋଳଭାଗରୁ ଏକଭାଗରେ ଏହା ଅବସ୍ଥିତ । କର୍ଣ୍ଣାଟକର ଲୋକମାନଙ୍କୁ କନ୍ନଡିଗାଙ୍କ୍ କୁହାଯାଏ ଓ ସେମାନେ କନ୍ନଡ ଭାଷା କହନ୍ତି । କେତେକ ବିଦ୍ୱାନଙ୍କ ମତରେ ଏହି ପ୍ରଦେଶର ନାମ କରଣ କାରି-ନାଡୁ ବା କୃଷ୍ଣ ମୃତ୍ତିକାର ଦେଶ ହୋଇଛି ଓ ଆଉ କେତେକ କହନ୍ତି ଯେ ପ୍ରକୃତରେ ଏହା କାରୁନାଡୁ ବା ସୁନ୍ଦର ଦେଶକୁ ବୁଝାଏ ।

ଏହାର ରାଜଧାନୀ ବାଙ୍ଗାଲୋର, ସାରା ଭାରତରେ ବିଜ୍ଞାନର ସହର ଭାବେ ସ୍ୱୀକୃତ ହୋଇଛି । ଏହାକୁ ମଧ୍ୟ ଇଲେକ୍ଟ୍ରୋନିକ୍ସ ନଗରୀ କୁହାଯାଏ, କାରଣ ଦେଶର ଅଧିକାଂଶ ବଡ ବଡ ଇଲେକ୍ଟ୍ରୋନିକସ୍ ଶିଳ୍ପ ଏଠାରେ ଅବସ୍ଥିତ । ଏହା ଏସିଆର ଦ୍ରୁତତମ ବିକଶିତ ନଗରୀ ।

କାବେରୀ ନଦୀ ପଶ୍ଚିମଘାଟ ପାର୍ବତ୍ୟ ଅଞ୍ଚଳରୁ ଏକ ଛୋଟ ଝରଣାର ରୂପ ନେଇ ଯାତ୍ରା ଆରମ୍ଭ କରିଛି ଓ ତା'ପରେ ଅନେକ ଜଙ୍ଗଲ, ସବୁଜ କ୍ଷେତ, ମଲ୍ଲୀ, ଗୋଲାପ ଓ ସୁନ୍ଦର ଫୁଲର ଉଦ୍ୟାନ ମାନଙ୍କ ମଧ୍ୟରେ ଅନେକ ପଥ ଅତିକ୍ରମ କରିଛି । ବହୁବର୍ଷ ତଳେ, ଜଣେ ରାଜା ଏହି ଅଞ୍ଚଳରେ ରାଜତ୍ୱ କରୁଥିଲେ । ଥରେ ତା'ଙ୍କ ରାଜ୍ୟରେ ସାପଙ୍କର ପାର୍ଦୁଭାବ ବଢିଗଲା ଓ ଲୋକମାନେ



ବଡ ହନ୍ତସନ୍ତ ହେଲେ । ରାଜା ଯେତେ ଚିନ୍ତା କଲେ ବି, ତା'ଙ୍କୁ କିଛି ଉପାୟ ମିଳୁ ନଥାଏ । ତା'ଙ୍କର ଗୋଟିଏ ସୁନ୍ଦର ଓ ଦକ୍ଷ ପୁତ୍ର ଥିଲା ସେ ତାଙ୍କୁ ସମସ୍ୟାର ସମାଧାନ ପାଇଁ ପଠାଇଦେଲେ । ସେ ଅରଣ୍ୟ ମଧ୍ୟକୁ ଯାଇ ଯେଉଁଠାରେ ସାପ ଦେଖିଲେ, ତା'କୁ ମାରି ପକାଇଲେ ।

ଦିନେ, ସାପ ଶିକାର କରିବା ପରେ, କ୍ଲାନ୍ତ ରାଜକୁମାର ଗୋଟିଏ ବିରାଟ ବୃକ୍ଷ ତଳେ ବିଶ୍ରାମ ନେଲେ ଓ ତା'ଙ୍କର ଅଙ୍ଗ ରକ୍ଷୀମାନେ ପହରା ଦେଲେ । ଏତିକିବେଳେ ସପ୍ତଫଣାଯୁକ୍ତ ଏକ ବିଶାଳ ସାପ ଗଛରୁ ତଳକୁ ଓହ୍ଲାଇଲା ଓ ରାଜକୁମାର ଆଡକୁ ଅଗ୍ରସର ହେଲା । ଅନୁଚରମାନେ ଖଡ୍‌ଗ ବାହାର କରି ସାପକୁ ମାରିବା ପାଇଁ ଉଦ୍ୟତ ହେବା ବେଳକୁ ରାଜ କୁମାର ଉଠି ବସି ସାପର ହଳଦିଆ ରଙ୍ଗର ଆଖିକୁ ଲକ୍ଷ୍ୟ କଲେ । ସେ କ'ଣ ଦେଖିଲେ କେଜାଣି, ବଡ ପାଟିରେ ଚିତ୍କାର କଲେ, ''ରୁହ, ଏହି ଭଦ୍ର ପ୍ରାଣୀଟିକୁ ହତ୍ୟା କରନାହିଁ । ତା'ର ଚକ୍ଷୁରୁ ମୁଁ ଦୁଃଖ ଲକ୍ଷ୍ୟ କରି ପାରୁଛି । ସେ ମୋତେ କିଛି କହିବାକୁ ଚାହୁଁଛି ।'

ତା'ପରେ ସେ ସାପ ଆଡକୁ ବୁଲିପଡି କୋମଳ କଣ୍ଠରେ କହିଲେ, ''ହେ ଭଦ୍ର ସର୍ପ ! ମୁଁ ତୁମ ପାଇଁ କ'ଣ କରିପାରେ ?''

ସର୍ପ ମାନବ ସ୍ୱରରେ କହିବାକୁ ଆରମ୍ଭ କଲା, ''ରାଜକୁମାର, ଗତ ସାତବର୍ଷ ଧରି ମୋତେ ଭୟଙ୍କର ମୁଣ୍ଡବ୍ୟଥା ରୋଗ ଧରିଛି । କୌଣସି ଉପାୟରେ ଭଲ ହେଉନାହିଁ । ଏପରି ଯନ୍ତ୍ରଣା ହେଉଛି ଯେ, ମୁଁ ମୋ ରାଜ୍ୟର ସର୍ପମାନଙ୍କୁ ନିୟନ୍ତ୍ରଣ କରିପାରୁନାହିଁ । ମୁଁ ସେମାନଙ୍କର ରାଜା । ତୁମେ ମୋତେ ସାହାଯ୍ୟ କରିବ କି ?''



ଉତ୍ତରରେ ରାଜକୁମାର କହିଲେ, ''ମୁଁ ତୁମ ପାଇଁ କ'ଣ କରିପାରିବି ?''

''ତୁମ ରାଜ୍ୟଠାରୁ ସାତ ଯୋଜନ ଦୂରରେ (ଏକ ଯୋଜନ ହେଉଛି ଚାରି କୋଶ ବା ୮ରୁ ୯ ମାଇଲ) ଆଉ ଏକ ରାଜ୍ୟ ଅଛି । ସେହି ରାଜାଙ୍କର ଗୋଟିଏ ସୁନ୍ଦର ଓ କୋମଳ କନ୍ୟା ଅଛି- ଯାହାର ଓଜନ ଅତି ବେଶିରେ ସାତୋଟି ମଲ୍ଲୀଫୁଲର ଓଜନ ହେବ । ସେହି ମଲ୍ଲିକା କୁମାରୀ କେବେ ହସେ ନାହିଁ କି କାନ୍ଦେ ନାହିଁ । କେତେବେଳେ ଯଦି ସେ ହସିବ, ତେବେ ତା'ର ପାଟିରୁ ତିନୋଟି ମଲ୍ଲୀଫୁଲ ଝଡି ପଡିବ ଓ ସେଥିଭିତରୁ ଦ୍ୱିତୀୟ ମଲ୍ଲୀଫୁଲକୁ ମୁଁ ଆଘ୍ରାଣ କଲେ, ମୋର ମୁଣ୍ଡବ୍ୟଥା ଦୂର ହୋଇଯିବ । ତା'ପରେ ମୁଁ ମୋର ରାଜ୍ୟ ସମ୍ଭାଳିନେବି ଓ ତୁମର ପ୍ରଜାମାନେ ଆଉ ହଇରାଣ ହେବେ ନାହିଁ । ତୁମେ ମୋ ପାଇଁ ସେହି ଫୁଲ

# ଇତିହାସ

ଖ୍ରୀଷ୍ଟପୂର୍ବ ତିନିଶହ ବେଳକୁ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ଶାସନ କାଳରୁ କର୍ଣ୍ଣାଟକ ଇତିହାସରେ ସ୍ଥାନ ପାଇ ଆସିଛି । ଏହା ବିଶ୍ୱାସ କରାଯାଏ ଯେ, ସମ୍ରାଟ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ତା'ଙ୍କ ରାଜତ୍ୱର ଶେଷ ସମୟରେ ରାଜପଦ ତ୍ୟାଗ କରି ଜୈନ ଧର୍ମ ଗ୍ରହଣ କରିଥିଲେ ଓ କର୍ଣ୍ଣାଟକର ଶ୍ରବଣବେଲଗୋଲାକୁ ଆସିଥିଲେ । ଶତାବ୍ଦୀଟିଏ ପରେ ଶ୍ରବଣ କେଲଗୋଲାଠାରେ ୧୭ ମିଟର ଉଚ୍ଚତା ବିଶିଷ୍ଟ ବିରାଟ ଗୋମତେଶ୍ୱର ପ୍ରତିମା ସ୍ଥାପିତ ହୋଇଛି ।



ଆଣି ପାରିବ କି ?''

ରାଜକୁମାର ତତ୍‌କ୍ଷଣାତ୍ ଉତ୍ତର ଦେଲେ ଯେ, ସେ ନିଶ୍ଚୟ ସେହି ମଲ୍ଲିକା କୁମାରୀଙ୍କୁ ଭେଟିବେ ଓ ତା'ଙ୍କୁ ହସାଇବେ । ତେଣୁ ସେ ପିତାମାତାଙ୍କ ନିକଟକୁ ଖବର ପଠାଇ ଦେଲେ ଓ ସେହି ରାଜ୍ୟ ଅଭିମୁଖେ ବାହାରି ଗଲେ । କିଛି ବାଟ ଗଲାପରେ ଗୋଟିଏ ବିରାଟ ସ୍ୱଚ୍ଛ ହ୍ରଦ ପଡିଲା । ସେ ଯେତେବେଳେ ତୃଷା ନିବାରଣ ପାଇଁ ନଇଁ ପଡି ଆଣି ଆଞ୍ଜୁଳାଏ ଆଣନ୍ତି, ଦେଖିଲେ ଯେ ଗୋଟିଏ ପିମ୍ପୁଡି ବସା ପାଣିରେ ଭାସି ଯାଉଛି । ''ଓଃ ! କି ଦୁଃଖର କଥା'' ସେ ତା'ଙ୍କ ପଗଡି ଫିଟାଇ ସେହି ପିମ୍ପୁଡି ବସାକୁ ଧରି ଆଣି କୂଳରେ ଛାଡିଦେଲେ ।

''ଧନ୍ୟବାଦ, ରାଜକୁମାର'' ଛୋଟ ଛୋଟ ପିମ୍ପୁଡିମାନେ ମିଳିତ ସ୍ୱରରେ କହିଲେ: ''ଯଦି କେତେବେଳେ ଆମର ଆବଶ୍ୟକତା ପଡେ, ତେବେ ଆମକୁ କେବଳ ମନେ ପକାଇଲେ, ଆମେ ସାହାଯ୍ୟ କରିବା ପାଇଁ ସେଠାରେ ପହଞ୍ଚିଯିବୁ ।''



ତା'ପରେ ରାଜକୁମାର ଘଞ୍ଚ ଅରଣ୍ୟ ମଧ୍ୟରେ ଯାଉଥିବା ବେଳେ କେଉଁଠାରୁ କାହାର ବିକଳ ଗର୍ଜନ ଶୁଣିବାକୁ ପାଇଲେ । କେଉଁଠାରୁ ଏପରି ଶବ୍ଦ ଆସୁଛି

ଭାବି ସେ ସେହି ଦିଗରେ ଗଲେ ଓ ଦେଖିବାକୁ ପାଇଲେ ଯେ, ଗୋଟିଏ ବିରାଟ ରାକ୍ଷସ ତଳେ ପଡିଛି ଓ ତା'ଉପରେ ଗୋଟିଏ ବିରାଟ ତେନ୍ତୁଳି ଗଛ ଠିଆ ହୋଇଛି । ସମ୍ଭବତଃ କେତେବେଳେ ରାକ୍ଷସ ପାଟି ମେଲା କରି ନିଘୋଡ ନିଦରେ ଶୋଇଛି ଓ ଗୋଟିଏ କାଉ ତା' ପାଟିରେ ଗୋଟିଏ ତେନ୍ତୁଳି ମଞ୍ଜି ପକାଇ ଦେଇଛି, ସେହି ମଞ୍ଜିରୁ ବିରାଟ ଗଛ ହୋଇଛି । ରାକ୍ଷସର ନିଦ ଭାଙ୍ଗିଲା ବେଳକୁ ତା'ର ଦେହସାରା ତେନ୍ତୁଳିର ଚେର ମାଡି ଯାଇଛି ଓ ମାଟି ସହିତ ପୋତି ହୋଇ ଯାଇଛି । ବିଚରା ରାକ୍ଷସ ଉଠି ପାରୁନି କି ହଲଚଲ ହୋଇ ପାରୁନି । କେବଳ ଗର୍ଜନ କରୁଛି । ରାଜକୁମାର ତା'ଙ୍କ ଧାରୁଆ ଖଣ୍ଡାରେ ଚେର ସବୁ କାଟି ପକାଇଲେ ଓ ରାକ୍ଷସକୁ ଉଠି ବସିବାରେ ସାହାଯ୍ୟ କଲେ । ରାକ୍ଷସ ତା'ଙ୍କ ପ୍ରତି କୃତଜ୍ଞତା ଜଣାଇଲା ।

''ତୁମେ ନ ଆସିଥିଲେ, ମୋର କ'ଣ ହୋଇଥାନ୍ତା କେଜାଣି ! କେତେବେଳେ ଅସୁବିଧାରେ ପଡିଲେ ମୋତେ ମନେ ପକାଇବ, ମୁଁ ତୁମକୁ ସାହାଯ୍ୟ କରିବା ପାଇଁ ତତ୍‌କ୍ଷଣାତ୍ ପହଞ୍ଚି ଯିବି ।'', ସେ କହିଲା ।

ତା'ପରେ ଆଉ କୌଣସି ବିଶେଷ ଘଟଣା ଘଟି ନ ଥିଲା ଓ ରାଜକୁମାର ସେହି ରାଜ୍ୟର ସୀମାନ୍ତରେ ପହଞ୍ଚିଗଲେ । ସେ ସେଠାରେ ଶିବିର ପକାଇ ରହିଲେ ଓ, ରାଜାଙ୍କ ପାଖକୁ ଖବର ପଠାଇଲେ ଯେ ସେ ହେଉଛନ୍ତି ଉତ୍ତରପ୍ରାନ୍ତର ରାଜାଙ୍କ ପୁତ୍ର ଓ ମଲ୍ଲିକା କୁମାରୀଙ୍କୁ ବିବାହ କରିବାକୁ ଆଶା ପୋଷଣ କରନ୍ତି । ଏହା ଶୁଣି ରାଜା ଖୁବ୍ ଖୁସି ହୋଇଗଲେ । ସେ ରାଜ୍ୟର ସୀମାନ୍ତକୁ ଯାଇ ତା'ଙ୍କୁ ସ୍ୱାଗତ ଜଣାଇଲେ ଓ ସସମ୍ମାନେ ପ୍ରାସାଦକୁ ଘେନି ଆସିଲେ ।

''ତୁମେ ମୋ କନ୍ୟା ନିମନ୍ତେ ଉପଯୁକ୍ତ ପାତ୍ର ମନେହେଉଛ କିନ୍ତୁ ଆମ ପରିବାରର ପ୍ରଥା ଅନୁସାରେ, ତା'ର ପାଣିଗ୍ରହଣ କରିବା ପୂର୍ବରୁ ତୁମକୁ ତିନୋଟି କାମ ପୁରା କରିବାକୁ ପଡିବ । ସେ ସବୁ କିଛି ବଡ କାମ ନୁହେଁ ।

ସୁନ୍ଦର ଓ ଦକ୍ଷ ରାଜକୁମାର କୌଣସି ଆହ୍ୱାନକୁ ନାସ୍ତି କରିବା ପରି ସ୍ୱଭାବର ନ ଥିଲେ । ତେଣୁ

## ଉଦ୍ଭିଦ ଜଗତ



*କର୍ଣ୍ଣାଟକ କୁର୍ଗ ଓ ଚିକମାଗାଲୁର୍ ଠାରେ ଉତ୍ପାଦିତ ହେଉଥିବା କଫି ପାଇଁ ଖୁବ୍ ପ୍ରସିଦ୍ଧ । ପୃଥିବୀର ପ୍ରସିଦ୍ଧ ଏରିକାନଟ୍ ଉତ୍ପାଦନ ପାଇଁ ସିମାଗୋ ବିଖ୍ୟାତ ଅଟେ ।*

*ବହୁ ପ୍ରକାରର ସୁବାସିତ ପୁଷ୍ପ ଓ ବୃକ୍ଷ ପାଇଁ ମଧ୍ୟ କର୍ଣ୍ଣାଟକର ନାମ ଅଛି । ସ୍ୱର୍ଣ୍ଣ ଚମ୍ପକ ବା ସାମ୍ପିଜେ, ମଲ୍ଲୀ ବା ମାଲ୍ଲିଜେ ପଣସ ଓ ଚନ୍ଦନ ଗଛ ଏଠାରେ ବହୁଳ ଭାବେ ଦେଖିବାକୁ ମିଳେ ।*

*ମାଲ୍‌ନାଡ ଅରଣ୍ୟାଞ୍ଚଳରେ ମସଲା ଜାତୀୟ ଉଦ୍ଭିଦ ବହୁଳଭାବେ ଚାଷ କରାଯାଏ ।*

ରାଜା ତା'ଙ୍କୁ କହିଲେ, ଆଚ୍ଛା, ଆମ ଗୋଦାମର ଗୋଟିଏ ଚାଉଳ ଗଦାରେ ଚାଉଳ ଓ ହରଡ ଡାଲି ମିଶିକରି ରହିଛି । ପ୍ରଥମେ, ଗୋଟିଏ ରାତି ଭିତରେ ତୁମକୁ ତା'କୁ ଅଲଗା ବାଛି ରଖିବାକୁ ପଡିବ । ତା'ପରେ ମୁଁ ଦ୍ୱିତୀୟ କାମ ବତାଇବି ।''

ରାଜକୁମାର ସେହି ଗୋଦାମକୁ ଗଲେ । ସେଠାରେ ଦେଖିଲେ ଯେ, ଛାତଯାଏଁ ଲାଗିଥିବା ଗୋଟିଏ ବିରାଟ ଚାଉଳ ଗଦାରେ ପ୍ରକୃତରେ ଚାଉଳ, ଡାଲି ମିଶି ରହିଛି । ତା'କୁ ଦେଖିବାକ୍ଷଣି ତା'ଙ୍କର ପିମ୍ପୁଡିଙ୍କ କଥା ମନେ ପଡିଗଲା । ଦେଖୁ ଦେଖୁ ପିମ୍ପୁଡି ବାହିନୀ ଆସି ଉପସ୍ଥିତି ହେଲେ । ସେମାନଙ୍କୁ କିଛି କହିବା ପୂର୍ବରୁ ସେମାନେ ବଛାବଛି କାମ ଆରମ୍ଭ କରିଦେଲେ । ରାତି ଅଧ ହେଲା ବେଳକୁ ଗୋଟିଏ ପାଖରେ କେବଳ ଚାଉଳ ଓ ଆର ଗୋଟିଏ ଗଦାରେ କେବଳ ଡାଲି ରହିଥିଲା ।

ତା' ପରଦିନ ସକାଳେ ରାଜା, ରାଜକୁମାରଙ୍କ କାମ ଦେଖିବାକୁ ଆସିଲେ । ସେ କାମ ହୋଇଯାଇଥିବାର ଦେଖି ବିସ୍ମିତ ହେଲେ ଓ ଖୁସି ମଧ୍ୟ ହେଲେ । ''ବାଃ ! ସାବାସ !, ଏଥରକ ତୁମକୁ ଶହେ ହଣ୍ଡା ଭାତ ସହିତ ଶହେ ହାଣ୍ଡି ଦହି ଖାଇବାକୁ ପଡିବ ।

ଏଥରକ ରାଜା ସେହି ରାକ୍ଷସ କଥା ମନେ ପକାଇଲେ ଓ ସେ ସଙ୍ଗେ ସଙ୍ଗେ ଆସି ପହଞ୍ଚିଗଲା ଓ ଚାହୁଁ ଚାହୁଁ ଭାତ, ସବୁ ନିଃଶେଷ କରିଦେଲା । ତା'ର ବିରାଟ ପାଟି ଓ ଓଠ ସବୁ ଶେଷ କରି ଗଲାବେଳକୁ ସେ ଖୁବ୍ ଖୁସିଥିଲା ।

ତା'ପର କାମ ହେଉଛି ଗୋଟିଏ ସୁବର୍ଣ୍ଣ ଘଣ୍ଟା ବଜାଇବାକୁ ପଡିବ, ଯାହା ସାତଟି ପ୍ରଦେଶକୁ ଶୁଭାଯିବ । ରାଜକୁମାର ପାହାଡ ଉପରକୁ ଯାଇ ପୁଣିଥରେ ରାକ୍ଷସ କଥା ସ୍ମରଣ କଲେ । ସେ ଆସି ପହଞ୍ଚିଗଲାପରେ ତା'କୁ କହିଲେ, ''ହେ ଭଦ୍ର ଦାନବ ! ତୁମେ ଏହି ଘଣ୍ଟି ଜୋର୍‌ରେ ବଜାଇ ପାରିବ କି ?''

ରାକ୍ଷସ ସାଙ୍ଗେ ସାଙ୍ଗେ ଦଉଡି ଧରି ଟାଣିଦେଲା ଓ ଘଣ୍ଟା ବାଜିଲା, ତାହା ସାତୋଟି ରାଜ୍ୟରେ ଶୁଣାଗଲା । ମଲ୍ଲିକାକୁମାରୀର ପିତା ମଧ୍ୟ ଏହି ଶବ୍ଦ ଶୁଣିଲେ ଓ କାଳ ବିଳମ୍ବ ନ କରି ବିବାହରର ବିରାଟ ଆୟୋଜନ ଆରମ୍ଭ କଲେ । ବିବାହ ପରେ ଏକ ବିରାଟ ପଟୁଆର ସହିତ ବହୁ ଯାନି ଯୌତୁକ ଧରି ରାଜଦମ୍ପତି ବିଦାୟ ନେଲେ ।

ବାଟରେ ଆସୁଥିବା ବେଳେ ଗୋଟିଏ ଗ୍ରାମ ନିକଟରେ ଗୋଟିଏ ମେଳା ଚାଲିଥିଲା ଓ ମାଙ୍କଡ

## ହସ୍ତକଳା ଓ ଶିଳ୍ପ



*ସୋରାବ, ସାଗର ଓ କୁମଟା ଅଞ୍ଚଳର ଗୁଡିଗାରାମାନେ ସୁନ୍ଦର ଚନ୍ଦନକାଠ ଓ ହାତୀଦାନ୍ତ ଖୋଦେଇ କାମ ପାଇଁ ଖୁବ ପ୍ରସିଦ୍ଧ । କର୍ଣ୍ଣାଟକର ଜଣାଶୁଣା ଶିଳ୍ପ ହେଉଛି ଚନ୍ଦନକାଠ ଖୋଦେଇ । ରୋଜ୍‌ଉଡ୍‌ରେ ସୂକ୍ଷ୍ମକାମ ଲାଖ, ଟେରାକୋଟା ଓ ସୁଗନ୍ଧିତ ଦ୍ରବ୍ୟ । ଏହି ପ୍ରଦେଶ ତା'ର ରେଶମ ଶିଳ୍ପ ପାଇଁ ମଧ୍ୟ ଖୁବ ନାମକରା ।*



ନାଚ ହେଉଥିଲା ।

''ଏହା କ'ଣ ?'' ରାଜକୁମାରୀ ପଚାରିଲେ । ଯାହାଙ୍କର ଓଜନ ସାତୋଟି ମଲ୍ଲୀଫୁଲର ଓଜନ ହେବ ଓ ସେ ଗୋଟିଏ କୋମଳ ଫୁଲ ପରି ବଢ଼ିଥିଲେ ଓ ଜୀବନରେ ଏପରି କିଛି ଦେଖି ନ ଥିଲେ ।

''ଏଠାକୁ ଆସି ଦେଖ !'' ରାଜକୁମାର ତା'ଙ୍କୁ ଘୋଡାଗାଡିରୁ ଓହ୍ଲାଇଦେଲେ ଓ ଯେଉଁଠାରେ ଖେଳ ହେଉଥିଲା, ସେଠାକୁ ନେଇଗଲେ ।

ମଲ୍ଲିକା କୁମାରୀ ମାଙ୍କଡ ଓ ସେମାନଙ୍କର ଖେଳ କୌଶଳ ଦେଖି ଖୁବ୍ ଆମୋଦିତ ହେଲେ । ତା'ପରେ ଆଗରୁ କେବେ ହସି ନ ଥିବା ରାଜକୁମାରୀ ମନଖୋଲା ହସରେ ହଜିଗଲେ ଓ ତାଙ୍କ ଓଠରୁ ତିନୋଟି ମଲ୍ଲୀଫୁଲ ଝରି ପଡିଲା । ରାଜକୁମାର ସେଗୁଡିକ ସଂଗ୍ରହ କରିନେଲେ । ଦ୍ୱିତୀୟ ଫୁଲଟିକୁ ବଡ ଯତ୍ନରେ ନିଜ ପଗଡି ଭିତରେ ସାଇତି ରଖିଲେ ।

ରାଜ୍ୟକୁ ଫେରିବା ବାଟରେ ରାଜକୁମାର ସେହି ବୃକ୍ଷ ପାଖରେ ଅଟକିଲେ । ଯେଉଁଠାରେ ତା'ଙ୍କୁ ସର୍ପରାଜ ଭେଟିଥିଲା । ସେ ତା'କୁ ଦ୍ୱିତୀୟ ଫୁଲଟି ଦେଲେ । ସର୍ପ ଫୁଲଟିକୁ ଆଘ୍ରାଣ କଲା ଓ ସଂଗେ ସଂଗେ ସୁସ୍ଥ ଅନୁଭବ କଲା । ସେ ରାଜକୁମାରଙ୍କ ଗୋଟିଏ ସୁନ୍ଦର ମଣି ଉପହାର ଦେଲା, ଯେଉଁଥିରେ ଲେଖାଥିଲା, ''ଯଦି ତୁମେ ମୋତେ କେବେ ଲୋଡିବ, ତେବେ ଏହି ମଣି ଭିତରକୁ ଚାହିଁବ ।''

-ଉମା ରମଣ

## ପର୍ଯ୍ୟଟନ ସ୍ଥଳୀ

କର୍ଣ୍ଣାଟକ ହେଉଛି ପର୍ଯ୍ୟଟକଙ୍କର ସ୍ୱର୍ଗ । ଉଭୟ ପ୍ରାକୃତିକ ଓ ମନୁଷ୍ୟକୃତ ସୌନ୍ଦର୍ଯ୍ୟର ଏହା ଗନ୍ତାଘର । ଦୁଇଟି ବନ୍ୟପ୍ରାଣୀ ସଂରକ୍ଷଣ ଚାନ୍ଦିପୁର ଓ ନଗରହୋଲରେ ହାତୀ, ବାଇସନ, ଗୌର, ପାତି ଦେଖିବାକୁ ମିଳନ୍ତି । ଜୋଗ୍‌ଠାରେ ସାହାରାବତୀ ନଦୀ ଏକ ସୁଦୃଶ୍ୟ ଜଳପ୍ରପାତ ସୃଷ୍ଟି କରିଛି । ମହୀଶୁର ସହର ମନୋରମ ବୃନ୍ଦାବନ ଗାର୍ଡେନ୍ ପାଇଁ ପ୍ରସିଦ୍ଧ ଓ ଏଠାରେ ମହୀଶୁର୍ ରାଜପ୍ରାସାଦ ରହିଛି । ଏଠାରେ ଦର୍ଶନୀୟ ପାର୍ବତ୍ୟ ଦୁର୍ଗ ହେଉଛି ବେଲାରୀ, ଚିତ୍ରଦୁର୍ଗ ଓ ବାଦାମୀ, ଓ ଆଇହୋଲ୍‌ର ଗୁମ୍ଫା-ମନ୍ଦିର, ଗୋମତେଶ୍ୱର ପ୍ରତିମା, ଗୁମୁଣ୍ଡିର ମୁଗୁନି ପଥରର ବୃଷଭ, ହାମ୍ପିର ଅବଶେଷ, ଭୟଶାଳୀର ମନ୍ଦିର ଓ ବିଜାପୁରର ଗୋଲ ଗମ୍ବୁଜ ଆଦି ଅନେକ ଗୁରୁତ୍ୱପୂର୍ଣ୍ଣ ଦର୍ଶନୀୟ ସ୍ଥଳୀ ଏଠାରେ ଅଛି ।

# ସମ୍ବାଦ ବିଚିତ୍ରା

## ମହାକାଶକୁ ଯାତ୍ରା




ଏପ୍ରିଲ୍ ମାସରେ ଦ୍ୱିତୀୟ ପର୍ଯ୍ୟଟକ ମହାକାଶକୁ ଯାତ୍ରା କରିବେ । ଦକ୍ଷିଣ ଆଫ୍ରିକାର ମାର୍କ ସଟଲ୍‌ୱାର୍ଥ ଏ ମଧ୍ୟରେ ୨୦ କୋଟି ଆମେରିକୀୟ ଡଲାର ଏହି ମହାକାଶ ଯାତ୍ରା ପାଇଁ ପୈଠ କରିଛନ୍ତି । ଆମେରିକୀୟ ମହାକାଶ ପ୍ରତିଷ୍ଠାନ: 'ନାସା' ଆଦୌ ଖୁସି ନଥିଲେ ଯେତେବେଳେ ଡେନିସ୍ ଟିଟୋ ଏକ ବର୍ଷ ପୂର୍ବେ ବିଶେଷ ସଫଳତା ନ ପାଇ ମହାକାଶ ଯାତ୍ରା ରୁ ଫେରି ଆସିଲେ । ଏବେ ସେ ୨୮ ବର୍ଷରୁ କମ୍ ବର୍ଷର ଯୁବକ ମାର୍କଙ୍କୁ ମହାକାଶଯାତ୍ରା ସମ୍ପର୍କରେ ଶିକ୍ଷା ଦେଉଛନ୍ତି । ସେ ମଧ୍ୟ ଋଷିଆରେ ଶିକ୍ଷା ଗ୍ରହଣ କରିବେ ଓ ଋଷୀୟ ରକେଟରେ ଯାତ୍ରା କରିବେ ।

ଏ ମଧ୍ୟରେ ବ୍ରିଟେନ୍ ମହାକାଶରେ ଯାତ୍ରା ପାଇଁ 'ଭିସା' ବ୍ୟବସ୍ଥା ଲାଗୁ କରିଛନ୍ତି । ତେଣୁ ଯଦି କେହି ମହାକାଶରେ ଯାତ୍ରା କରିବା ପୂର୍ବରୁ 'ଭିସା' ସଂଗ୍ରହ କରିବାକୁ ଚାହିଁବେ ତେବେ ସେମାନେ ମଦ, ସିଗାରେଟ ଓ ଡ୍ରଗ୍ସ୍ ସେବନ କରିବେ ନାହିଁ ।

ତା ସହିତ ଯେଉଁ ଦୁଇଟି ବିଷୟ ଗୁରୁତ୍ୱପୂର୍ଣ୍ଣ ତାହା ହେଉଛି: ଶାରିରୀକ ସୁସ୍ଥତା ଓ ଇଂରାଜୀ ଭାଷାରେ ଦକ୍ଷତା ।

## ମହାକାଶରେ ସଂଗୀତ



ବିଗଲ୍-୨, ମଙ୍ଗଳ ଗ୍ରହରେ ଡିସେମ୍ବର୨୩, ୨୦୦୩ ତାରିଖରେ ଅବତରଣ କରିବ । ମହାକାଶ ଜାନଟି ଉହ୍ଲେଇବା ମାତ୍ରେ ସଂଗୀତରେ ଝଂକୃତ ହୋଇ ଉଠିବ । ଏହି ସଂଗୀତ ବ୍ରିଟିସ୍ ପପ୍ ସଂଗୀତ ଗାୟକ ବ୍ଲୁର୍‌ଙ୍କ ଦ୍ୱାରା ସଂଯୋଜିତ ।

ବ୍ଲୁର୍ ସଂଗୀତ ପ୍ରେମୀ ମାନଙ୍କ ମତରେ ଏହା 'ପୃଥିବୀ ବାହାର'ର ସଂଗୀତ । ବ୍ଲୁରଙ୍କ ସଂଗୀତ ଦଳ ମଧ୍ୟ ସେମାନଙ୍କ ସଂଗୀତକୁ ଉପଗ୍ରହ ମାଧ୍ୟମରେ ବିଭିନ୍ନ ଗ୍ରହକୁ ପଠାଇବାରେ ଆଗ୍ରହୀ । ବ୍ଲୁର ଏକ ଗୀତ ରଚନା କରିଛନ୍ତି: 'ବଗଲ୍ ଏବେ ଆକାଶରେ' ଯାହା ମହାକାଶଚାରୀ ଓ ପୃଥିବୀର ଲୋକ ମାନେ ଉପଗ୍ରହ ଜରିଆରେ ଏକ ସଂଗରେ ଶୁଣି ପାରିବେ ।



# ବିଘ୍ନେଶ୍ୱର

ପାର୍ବତୀ ଗଣପତିଙ୍କ ଆର୍ତ୍ତନାଦ ଶୁଣି ଦଉଡ଼ି ଆସିଲେ । କିନ୍ତୁ ଆସି ଯାହା ଦେଖିଲେ, ସେଥିରେ ସେ ପ୍ରାୟ ସଂଜ୍ଞା ହରାଇଲେ ।

ଶିବଙ୍କ ଉପରକୁ କଠୋର ଦୃଷ୍ଟି ପାତ କରି ସେ କହିଲେ, "ଇଏ ଆପଣ କଲେ କ'ଣ ? ପୁତ୍ରକୁ ବଧ କଲେ ?" ପାର୍ବତୀ ଆଉ କିଛି କହି ପାରିଲେ ନାହିଁ । ତାଙ୍କ କଣ୍ଠ ହେଲା ବାଷ୍ପରୁଦ୍ଧ ।

ପାର୍ବତୀ କ'ଣ କହୁଛନ୍ତି, ସେକଥା ଶିବ ସହସା ଠଉରାଇ ପାରିଲେ ନାହିଁ । ପୁଅ ପୁଣି କିଏ ? ସେ କାହିଁକି ପୁତ୍ର ବଧ କରନ୍ତେ ? ଗୋଟାଏ ଅଜ୍ଞାତ ବାଳକ ତାଙ୍କ ଆଗରେ ଔଦ୍ଧତ୍ୟ ପ୍ରଦର୍ଶନ କରିବାରୁ ସିନା ସେ ତାକୁ ଶାସ୍ତି ଦେଲେ ! ପାର୍ବତୀ ଏବେ କିପରି କଥା କହୁଛନ୍ତି ?

ଶିବ ପ୍ରଥମେ ପାର୍ବତୀଙ୍କୁ ଧୈର୍ଯ୍ୟ ଧରିବାକୁ କହିଲେ ଓ ଘଟଣାଟି ବୁଝିବାର ଚେଷ୍ଟା କଲେ । କିନ୍ତୁ ପାର୍ବତୀ ଧୈର୍ଯ୍ୟ ଧରିବେ କ'ଣ, ଅଧିକରୁ ଅଧିକ ଶୋକାକୁଳ ଦେଖା ଯାଉଥାନ୍ତି । ସେ ବାରମ୍ବାର କହୁଥାନ୍ତି, "ଆହା ! ପୁତ୍ରକୁ ପ୍ରାଣରେ ମାରିଦେଲ ? ଏହା କିପରି କରିପାରିଲ ?"

ସେଠାରେ ସମବେତ ସମସ୍ତଙ୍କ ଭିତରେ ବିସ୍ମୟର କୋଳାହଳ ପଡ଼ିଗଲା । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଶିବଙ୍କ ଆଡ଼କୁ ଅନାଇଲେ । ବାସ୍ତବିକ ଶିବ ନିଜ ପୁତ୍ରକୁ କିପରି ସଂହାର କରି ପାରିଲେ, ସେମାନେ ଏହା ବୁଝିପାରୁ ନ ଥିଲେ । ଶିବ ଭୀଷଣ ଅସ୍ୱସ୍ତି ଅନୁଭବ କଲେ । ତାଙ୍କ ଦେହରୁ ଝାଳ ବହିଗଲା । ସେ ପଚାରିଲେ, "ଇଏ ପୁତ୍ର ବା କିପରି ହେଲା ? ପୁତ୍ରକୁ ମୁଁ ଚିହ୍ନିପାରି ନଥାନ୍ତି ? କିଭଳି ଅବାନ୍ତର କଥା କହୁଛ ?"

ପାର୍ବତୀ ସେଇଠୁ ଗଣପତି କିପରି ଭାବରେ ସମ୍ଭୂତହେଲେ, ତା'ର ବିବରଣୀ ଶୁଣାଇଲେ । ଶିବ



କହିଲେ, ''ବର୍ତ୍ତମାନ ବୁଝୁଛି, ସେ ମା, ମା, ବୋଲି ତୁମକୁ ଡାକୁଥିଲା । କିନ୍ତୁ ସେକଥା ମୁଁ ବା କିପରି ଜାଣିଥାନ୍ତି ?''

ପାର୍ବତୀ ଗଣପତିଙ୍କ ଦେହକୁ ଆବୋରି କ୍ରନ୍ଦନ କରିବାକୁ ଲାଗିଲେ । ତାଙ୍କର ସେ ଦୁଃଖ ସମସ୍ତଙ୍କ ସକାଶେ ଅସହ୍ୟ ହେଲା । କିଏ ବା ତାଙ୍କୁ କିପରି ଉପାୟରେ ସାନ୍ତ୍ୱନା ଦେଇ ପାରିବେ ?

ହଠାତ୍ ଶୁଭିଲା ଆକାଶରୁ ଏକ ମନ୍ତ୍ରବାଣୀ, ଯିଏ ଉତ୍ତର ଦିଗକୁ ମୁଣ୍ଡ ରଖି ଶୋଇଛି, ତାହାରି ଶୀର ଆଣି ମୋ ଦେହରେ ସ୍ଥାପନ କର । ମୁଁ ଜୀବନ ଫେରି ପାଇବି ।''

ଦେବତା ଓ ପ୍ରମଥଗଣ ତତ୍‌କ୍ଷଣାତ୍ ଉତ୍ତର ଦିଗ ସନ୍ଧାନରେ ବାହାରି ପଡିଲେ । କିନ୍ତୁ ଉତ୍ତର ଦିଗକୁ ମୁଣ୍ଡ କରି କିଏ କାହିଁ ଶୋଇଥିବାର ସେମାନେ ଦେଖିପାରିଲେ ନାହିଁ ।

ଅବଶେଷରେ ସହ୍ୟାଦ୍ରି ପର୍ବତ ଉପରେ ଏକ ହାତୀ ଉତ୍ତର ଦିଗକୁ ମୁଣ୍ଡ କରି ଶୋଇଥିବାର ଶିବ ସ୍ମରଣ କରି ପାରିଲେ ।

ଦେବଲୋକର ଦିବ୍ୟହସ୍ତୀ ଐରାବତର ସନ୍ତାନ ସେ ହାତୀ । ତା' ନାମ ଗଜେନ୍ଦ୍ର ।

ଐରାବତ ଇନ୍ଦ୍ରଙ୍କ ବାହନ । ଥରେ ଇନ୍ଦ୍ର ଅବତରଣ କଲାବେଳେ ଗଜେନ୍ଦ୍ର ଧ୍ୟାନସ୍ଥ ଥିବା ହେତୁ ତାଙ୍କୁ ଅଭିବାଦନ ଜଣାଇଲା ନାହିଁ । ଇନ୍ଦ୍ର ରାଗିଯାଇ କହିଲେ, ''ଆରେ, ମୋ ବାହନର ପୁଅ ହୋଇ ଏହାର ପୁଣି ଏତେ ଗର୍ବ ?''

ଶାନ୍ତ କଣ୍ଠରେ ଗଜେନ୍ଦ୍ର କହିଲା, ''ମୋ ପିତା ନିଜର ଯଥାର୍ଥ କର୍ତ୍ତବ୍ୟ କରୁଛନ୍ତି । ତାହାହିଁ କ'ଣ ଯଥେଷ୍ଟ ନୁହେଁ ? ମୋ ଉପରେ ଆପଣ ବିରକ୍ତ ହେବାର କ'ଣ ଅଛି ? ମୁଁ ବା ଆପଣଙ୍କୁ କାହିଁକି ଡରିବି ?''

''ଆରେ ହସ୍ତୀ-ସୂତ ! ମୁଁ ଦେବେନ୍ଦ୍ର !'' ଘୋଷଣା କଲେ ଇନ୍ଦ୍ର ।

''ସେଉଠୁ ? ମୁଁ ବି ଗଜେନ୍ଦ୍ର ! କେତେ ଇନ୍ଦ୍ର ଅଛନ୍ତି । ଯଥା ନାଗେନ୍ଦ୍ର, ପକ୍ଷୀନ୍ଦ୍ର, ଇତ୍ୟାଦି । ଜଣେ ତପସ୍ୟା କଲେ ଇନ୍ଦ୍ରପଦ ପ୍ରାପ୍ତ ହେବ । ସେଥିପାଇଁ କେହି ତପସ୍ୟାରେ ବସିଲେ ଆପଣ ଥରହର ହୁଅନ୍ତି !''

ଇନ୍ଦ୍ର ଆହୁରି କ୍ରୁଦ୍ଧ ହେଲେ । ସେ ଗଜେନ୍ଦ୍ରକୁ ଧରି ତଳକୁ ପକାଇ ଦେଲେ । ଗଜେନ୍ଦ୍ରର ସେଥିରେ କୌଣସି ଭାବାନ୍ତର ହେଲା ନାହିଁ । ସେ ଥିଲା ମହାଜ୍ଞାନୀ । ସେ କୈଳାସ ଶିଖରର ଅଦୂରରେ ଥିବା ଏକ ପର୍ବତ ଉପରକୁ ଖସି ଆସି ସେହିଠାରେ ବିଶ୍ରାମରତ ଥିଲା ।

ଦେବତାମାନେ ଗଜେନ୍ଦ୍ରର ସନ୍ଧାନ ପାଇ ତା' ମୁଣ୍ଡ କାଟି ନେଇଗଲେ ଓ ଗଣପତିଙ୍କ ସ୍କନ୍ଧରେ ସ୍ଥାପନ କଲେ । ଚାହୁଁ ଚାହୁଁ ନୂତନ ଦିବ୍ୟ ମୂର୍ତ୍ତି ଧରି ଉଠି ବସିଲେ ଗଣପତି ।

ଶିବ ଗଣପତିଙ୍କର ସେ ଅଦ୍ଭୁତ ମଧୁର ରୂପ ଅତି ଆଗ୍ରହରେ ଓ ଶ୍ରଦ୍ଧାରେ ଲକ୍ଷ୍ୟ କରି ଦେଖୁଥାନ୍ତି । ବିସ୍ମୟରେ ସମେବତ ଦେବଗଣ ମଧ୍ୟ ହତବାକ୍ ହୋଇ ଠିଆ ହୋଇଥାନ୍ତି । ସମଗ୍ର ଦେବସମାଜରେ ସେଭଳି ଭାବଗମ୍ଭୀର, କମନୀୟ ରୂପର ଅଧିକାରୀ କେହି ନ ଥିଲେ ।

କିନ୍ତୁ ପାର୍ବତୀ ତାଙ୍କ ଆଡ଼କୁ ଦୃକ୍‌ପାତ ନକରି କହିଲେ, ''ମୋ ପୁଅର ହାତୀମୁଣ୍ଡ ମୁଁ ସହ୍ୟ କରିବି କିପରି ? ନା, ମୁଁ ମୋଟେ ଅନାଇବି ନାହିଁ ।''

ଗଣପତି ମୁଧୁର କଣ୍ଠରେ କହିଲେ, ''ମା, ତମେ ଥରେ ମୁଗ୍ଧ ହୋଇ ଗୋଟିଏ ହାତୀର ଚିତ୍ର ଦେଖୁ ଥିବା ବେଳେ ମୁଁ ତୁମ ଆଗରେ ଦେଖା ଦେଇଥିଲି, ମନେ ନାହିଁ ? ମୁଁ ଆଉ କେହି ନୁହେଁ, ବିଘ୍ନେଶ୍ୱର ।''

ପାର୍ବତୀଙ୍କର ସ୍ୱପ୍ନ ଭଳି ସେ ସ୍ମୃତି ମନେ ପଡ଼ିଲା । ସେ ଆଖି ଖୋଲି ପୁତ୍ର ଆଡ଼କୁ ଅନାଇଲେ ।

ଶିବ କହିଲେ, ''ହେ ବିଘ୍ନେଶ୍ୱର ! ତୁମେ କ'ଣ ବାସ୍ତବରେ ଆମର ପୁତ୍ର ରୂପେ ଅବତୀର୍ଣ୍ଣ ହୋଇଛ ? ତମେ କାହିଁକି ଖେଳ ଖେଳିବା ପାଇଁ ମୋ ଭିତରେ କ୍ରୋଧର ଉଦ୍ରେକ କରିଥିଲ ? ବର୍ତ୍ତମାନ ସବୁ ବୁଝୁଛି । ତମ ଲୀଳା ବାସ୍ତବିକ ଅଦ୍ଭୁତ ।''

ଶିବ କହିଲେ, ''ହେ ବିଘ୍ନେଶ୍ୱର ! ତୁମେ କ'ଣ ବାସ୍ତବରେ ଆମର ପୁତ୍ର ରୂପେ ଅବତୀର୍ଣ୍ଣ ହୋଇଛ ? ତମେ କାହିଁକି ଖେଳ ଖେଳିବା ପାଇଁ ମୋ ଭିତରେ କ୍ରୋଧର ଉଦ୍ରେକ କରିଥିଲ ? ବର୍ତ୍ତମାନ ସବୁ ବୁଝୁଛି । ତମ ଲୀଳା ବାସ୍ତବିକ ଅଦ୍ଭୁତ ।''

''ଆପଣ ଗଜାସୁରକୁ ଯେଉଁ ବର ଦେଇଥିଲେ, ତାହା କିପରି ଭାବରେ ପୂର୍ଣ୍ଣ ହୋଇଥାନ୍ତା ?'' ବିଘ୍ନେଶ୍ୱର ଶିବଙ୍କୁ ସ୍ମରଣ କରାଇଦେଲେ ।



''ତମେ ବାସ୍ତବିକ ମୋତେ ବଡ଼ କଥାଟିଏ ମନେ ପକାଇଦେଲ । ମୋତେ ବର୍ତ୍ତମାନ ଗଜଚର୍ମ ଧାରଣ କରିବାକୁ ହେବ ଏବଂ ଗଜ ଶୀର ମୋ ପୁତ୍ରର ମସ୍ତକ ରୂପେ ଶୋଭିତ ହେବ ।'' ଶିବ କହିଲେ ।

ତା'ପରେ ବିଘ୍ନେଶ୍ୱରଙ୍କ ଆଗରେ ଅବନତ ହୋଇ ସେ କହିଲେ, ''ବିଘ୍ନେଶ୍ୱର ! ତୁମେ ଥରେ ମୋତେ ତୁମର ବିଶ୍ୱରୂପ ଦେଖାଅ ।''

ବିଘ୍ନେଶ୍ୱର ଶୂନ୍ୟମଣ୍ଡଳରେ ନିଜର ପଞ୍ଚଶୀର ବିକଶିତ କଲେ । ପୃଥିବୀ, ଜଳ, ଅଗ୍ନି, ବାୟୁ ଓ ଆକାଶ- ଏହି ପଞ୍ଚଭୂତ ହରିତ, ଧୂମ୍ର, ଲାଲ, ଶୁଭ୍ର ଓ ନୀଳ ବର୍ଣ୍ଣ-ରଞ୍ଜିତ ହସ୍ତୀ ଶୀର ରୂପରେ ଦେଖାଗଲା । ସେ ପଞ୍ଚଶୀର ଉପରେ ନକ୍ଷତ୍ରମାଳା ପୁଷ୍ପରାଶି ଭଳି ଶୋଭିତ ହେଉଥିଲା ।



ବିଘ୍ନେଶ୍ୱର କହିଲେ, ''ଦେଖିଲେ ତ ? ଏ ମୁଣ୍ଡ ଆଗରେ ଆପଣଙ୍କୁ ଶୀର ଅବନତ କରିବାକୁ ପଡ଼ିଲା !''

ଇନ୍ଦ୍ର ବୁଝିପାରିଥିଲେ ଯେ ବିଘ୍ନେଶ୍ୱର ଯେଉଁ ଶୀର ଧାରଣ କରିଛନ୍ତି, ତାହା ଐରାବତ-ସୂତ ଗଜେନ୍ଦ୍ରର । ଇନ୍ଦ୍ର ଲଜ୍ଜିତ ତଥା ଅନୁତପ୍ତ କଣ୍ଠରେ କହିଲେ, ''ଗଜେନ୍ଦ୍ର ! ତୁମେ ବାସ୍ତବିକ ଜ୍ଞାନୀ । ଏ ଅଜ୍ଞାନୀକୁ କ୍ଷମା କର ।''

ଏହା କହି ଇନ୍ଦ୍ର ବିଘ୍ନେଶ୍ୱରଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରନ୍ତେ ଅନ୍ୟ ଦେବତାମାନେ ତାଙ୍କୁ ଅନୁସରଣ କଲେ ।

ବିଶ୍ୱରୂପଧାରୀ ବିଘ୍ନେଶ୍ୱରଙ୍କୁ ଶିବ କହିଲେ, ''ଦେବ ! ମୋର ଧାରଣା, ତମର ଏ ରୂପର ବିଶେଷ ପ୍ରକାର ଅର୍ଥ ରହିଛି । ସେ ଅର୍ଥ ଜାଣିବା ନିମନ୍ତେ ମୋର କୌତୁହଳ ହେଉଛି ।''

ବିଘ୍ନେଶ୍ୱର ସେ ପ୍ରଶ୍ନର ଉତ୍ତର ଦେଲେ ଭିନ୍ନ ପ୍ରକାରେ । ସେ କହିଲେ, ''ସମଗ୍ର ବିଶ୍ୱ ଶିବଭକ୍ତଙ୍କର ହିଁ ସମାବେଶ । ବିଶ୍ୱପିତା ବିଶ୍ୱମାତା ଶିବପାର୍ବତୀଙ୍କର ମୁଁ ପୁତ୍ର ମାତ୍ର । ମୁଁ ମୋ ପିତାମାତାଙ୍କୁ ପ୍ରଣାମ କରୁଛି !''

ବ୍ରହ୍ମା ଆଗକୁ ଆସି କହିଲେ, ''ବିଷ୍ଣୁ ମତ୍ସ୍ୟାବତାର ଧାରଣ କରି ସୋମକାସୁରକୁ ସଂହାର କଲେ ଓ ବେଦ ଉଦ୍ଧାର କଲେ । ସେ ବେଦକୁ ଅଶେଷ ଦ୍ୟୁତିମାନ ବିଘ୍ନେଶ୍ୱର ମୋତେ ସମର୍ପଣ କରିଥିଲେ । ସେତିକିବେଳେ ମୁଁ ବିଘ୍ନେଶ୍ୱରଙ୍କ ସମ୍ପର୍କରେ କେତେକ ତଥ୍ୟ ଜାଣିନେଇଥିଲି । ସଂକଳ୍ପ-ସିଦ୍ଧି ସକାଶେ ବିଘ୍ନେଶ୍ୱରଙ୍କୁ ଧ୍ୟାନ କରି ମୁଁ ସୃଷ୍ଟିକାର୍ଯ୍ୟରେ ମନୋନିବେଶ କରିଥିଲି ।''

''ବିଘ୍ନେଶ୍ୱରଙ୍କ ସ୍ୱରୂପ ବିରାଟ । ସେ ସର୍ବବ୍ୟାପି । ତେଣୁ ତାଙ୍କର ଅନ୍ୟ ନାମ 'ବିଷ୍ଣୁ' । ସେ ଆକାଶ, ପୃଥ୍ୱୀ, ବାୟୁ, ଅଗ୍ନି ଓ ଜଳ ଇତ୍ୟାଦି

ତାଙ୍କ ଶୀର ଚତୁର୍ଦ୍ଦିଗରେ ସୂର୍ଯ୍ୟୋଦୟର ଆଭା ଭଳି ସ୍ନିଗ୍ଧ ଔଜ୍ଜଲ୍ୟ ଝଟକୁଥିଲା । ତାଙ୍କର କରମାନଙ୍କରେ ଅଙ୍କୁଶ, ପାଶ, କୁଠାର, କଳସ ସମେତ ଶଙ୍ଖ, ଚକ୍ର, ଗଦା, ପଦ୍ମ, ଡମ୍ବରୁ, ତ୍ରିଶୂଳ, ଜପମାଳା, କମଣ୍ଡଳୁ, ବୀଣା, ଖଡ୍‌ଗ, ଭାଲ ଆଦି ଶୋଭିତ ହେଉଥିଲେ । ତାଙ୍କ ଶୀର ଦେଖିବା ନିମନ୍ତେ ସମସ୍ତଙ୍କୁ ମସ୍ତକ ଉତ୍ତୋଳନ କରିବାକୁ ପଡ଼ିଥିଲା ।

ସେ ଦୃଶ୍ୟରେ ସମସ୍ତଙ୍କ ହୃଦୟ ଏକ ଅପୂର୍ବ ଆନନ୍ଦରେ ପୁରିଗଲା । ସରସ୍ୱତୀ ବୀଣା ଯୋଗେ ବିଘ୍ନେଶ୍ୱରଙ୍କ ପ୍ରିୟ ରାଗ ହଂସଧ୍ୱନି ବାଦନ କଲେ । ନାରଦ ପରେ ପରେ ମାୟା ମାଳବ ରାଗରେ ଅଳାପ କଲେ ଏବଂ ଆନନ୍ଦରେ ନୃତ୍ୟ କଲେ ଶିବ ।

ଇନ୍ଦ୍ରଙ୍କ ସମେତ ତିନିକୋଟି ଦେବଦେବୀ ଆସି ବିଘ୍ନେଶ୍ୱରଙ୍କୁ ପ୍ରଣାମ କଲେ । ଇନ୍ଦ୍ରଙ୍କ କାନରେ



ପଞ୍ଚ ମହାଭୂତର ଅଧିପତି । ଏହି ପଞ୍ଚଙ୍କୁ ଗଣ କୁହାଯାଏ । ତେଣୁ ସେ ମହା ଗଣାଧିପତି ।

"ହାତୀର ଶିର ମେଧା ଓ ଶକ୍ତିର ପ୍ରତୀକ । ଗଣପତିଙ୍କ ସ୍ତୁତି କଲେ ମେଧା ତଥା ଶକ୍ତି ବୃଦ୍ଧି ହୁଏ । ବିନା ଜ୍ଞାନରେ ଶକ୍ତି ବିପଜ୍ଜନକ । ମେଧା-ରହିତ ଶକ୍ତି ଆସୁରିକ ହୋଇପାରେ, ପୃଥିବୀରେ ପ୍ରଭୁତ କ୍ଷତି ଘଟାଇପାରେ । ତେଣୁ ଗଣପତିଙ୍କ ଭିତରେ ହୋଇଛି ଜ୍ଞାନ ସହ ଶକ୍ତିର ସମନ୍ୱୟ । ଏହା ଏକ ମହାନ୍ ସଂଯୋଗ ।"

"ଗଣପତିଙ୍କର ବାହନ ମୂଷିକ । କାହିଁ ହସ୍ତୀ-ଶୀର ବିଶାଳ ଗଣପତି, କାହିଁ କ୍ଷୁଦ୍ର କଳେବର ମୂଷିକ ! କିନ୍ତୁ ସୃଷ୍ଟିର ଏହା ଅନ୍ୟତମ ବୈଚିତ୍ର୍ୟ । ପ୍ରକୃତ ଦୃଷ୍ଟିକୋଣରୁ ଦେଖିଲେ କ୍ଷୁଦ୍ର ବିନା ବୃହତ୍ ତିଷ୍ଠି ପାରେନା । କ୍ଷୁଦ୍ର ଓ ବୃହତ୍ ସର୍ବତ୍ର ଏକତ୍ର ରହିବାକୁ ବାଧ । ପୁଣି ମହତ୍ ସହ ସାନ୍ନିଧ ଯୋଗୁଁ ହିଁ କ୍ଷୁଦ୍ର ଭିତରେ ମହତ୍ତ୍ୱର ବିକାଶ ହୁଏ ।

ଅଙ୍କୁଶ ନିୟନ୍ତ୍ରଣର ଚିହ୍ନ । ହାତୀକୁ ଯେପରି ଅଙ୍କୁଶ ଦ୍ୱାରା ସଂଯତ କରାଯାଏ, ସେହିପରି ଉଚ୍ଛୃଙ୍ଖଳ ବୁଦ୍ଧିକୁ ଅଙ୍କୁଶ ଦ୍ୱାରା ନିୟନ୍ତ୍ରଣ କରାଯାଏ । ତେଣୁ ବିଘ୍ନେଶ୍ୱରଙ୍କ ହାତରେ ଅଙ୍କୁଶ ଶୋଭିତ ।

ପାଶ ବିଶ୍ୱସଂସାର ନିୟମରେ ଆବଦ୍ଧ- ଏହି ସତ୍ୟ ସୂଚାଉଛି । ପୂର୍ଣ୍ଣ କଳସ ପୂର୍ଣ୍ଣତାର ଚିହ୍ନ । କୁଠାର ବିଘ୍ନ-ବିନାଶନର ଉପାୟ ।

ବିଘ୍ନେଶ୍ୱରଙ୍କର କର୍ଣ୍ଣ ପ୍ରଶସ୍ତ । ଚରାଚର ପ୍ରାଣୀଙ୍କ ଆବେଦନ ନିବେଦନ ଶୁଣିବାକୁ ସେ ସକ୍ଷମ । ବିଘ୍ନେଶ୍ୱରଙ୍କୁ ଅର୍ପିତ ଭୋଗ ତୁଷ୍ଟି ଓ ସଂବୃଦ୍ଧି ଆଣିଦିଏ । ସେ ଭୋଗ ଦେବାରେ ପ୍ରଭୁତ ସାର୍ଥକତା । ବିଘ୍ନେଶ୍ୱରଙ୍କ ଆକୃତି ପ୍ରତି ଯିଏ ଶ୍ରଦ୍ଧା ଓ ଭକ୍ତି ପୋଷଣ କରିପାରେ, ତାହାର କଳାଜ୍ଞାନ ଉନ୍ନତ ବୋଲି ବୁଝିବାକୁ ହେବ । ବାସ୍ତବରେ ଗଣପତିଙ୍କ ରୂପର ପଟାନ୍ତର ନାହିଁ । ଜ୍ଞାନ, ବୁଦ୍ଧି, ବଳ ସହ ବାତ୍ସଲ୍ୟର ଅପୂର୍ବ ସାମଞ୍ଜସ୍ୟର ବିଧାନ ହୋଇଛି ସେ ଆକୃତିରେ ।

ଗଣପତିଙ୍କୁ ସର୍ବ କର୍ମର ଆଦ୍ୟରେ ସ୍ମରଣ

କରିବା ଆବଶ୍ୟକ । ଏହି ଶୁଭ ମୂର୍ତ୍ତି ସମସ୍ତ ଅଶୁଭ ଦୂର କରିବାକୁ ସକ୍ଷମ । ତେଣୁ ସେ ସମସ୍ତ ମଙ୍ଗଳ କାର୍ଯ୍ୟର ଆରମ୍ଭରେ ଆରାଧ୍ୟ''

ଏହାପରେ ବ୍ରହ୍ମା ଆହୁରି ଅନେକ ପ୍ରକାରେ ବିଘ୍ନେଶ୍ୱରଙ୍କ ମହିମା କୀର୍ତ୍ତନ କଲେ ।

ସମବେତ ଦେବଦେବୀଗଣ ଯୁକ୍ତ କରରେ ବିଘ୍ନେଶ୍ୱରଙ୍କୁ ଶ୍ରଦ୍ଧା ନିବେଦନ କଲେ । ଦେବୀ ସରସ୍ୱତୀଙ୍କ ବୀଣାବାଦନ ସାଙ୍ଗକୁ ସେମାନଙ୍କର ସେ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଯୋଗୁଁ ସେଠାରେ ଏକ ଅଭାବନୀୟ ପବିତ୍ର ପରିସ୍ଥିତି ସୃଷ୍ଟି ହେଲା । ସେ ପରିସ୍ଥିତିରେ ନବଜାତ ଦେବ ଗଣପତି ଅତ୍ୟନ୍ତ ମହନୀୟ ଦେଖାଗଲେ । ଜନନୀ ପାର୍ବତୀଙ୍କ ଆନନ୍ଦ ଏପରି କି କହିଲେ ନ ସରେ ।

ଦେବତାମାନଙ୍କ ମଧ୍ୟରୁ କେହି କେହି ଗଣପତିଙ୍କ ଗୁଣରାଶି ବିଷୟରେ ଆହୁରି ପ୍ରଶ୍ନମାନ କଲେ । ବ୍ରହ୍ମା ସେମାନଙ୍କ ପ୍ରଶ୍ନର ଯଥାଯଥ ଉତ୍ତର ଦେଇ ସେମାନଙ୍କ କୌତୁହଳ ନିରାକରଣ କଲେ । ଦେବଗଣ ସେଉଠୁ ଗଣପତିଙ୍କ ଉଦ୍ଦେଶ୍ୟରେ ଜୟଧ୍ୱନି ଦେଲେ । ସେ ସମବେତ ଜୟଧ୍ୱନି ଭିତରେ ଗଣପତିଙ୍କ ବଦନ ଉଜ୍ଜ୍ୱଳ ଦେଖାଗଲା ।

ଶିବ ଦେବଗଣଙ୍କୁ ଅନାଇ କହିଲେ, ''ବ୍ରହ୍ମାଙ୍କ ଦ୍ୱାରା ଗଣପତିଙ୍କ ଗୁଣ-ବର୍ଣ୍ଣନା ସମସ୍ତେ ଶୁଣିଲେ ତ ? ବିଘ୍ନେଶ୍ୱରହିଁ ପ୍ରଥମେ ପୂଜ୍ୟ ଦେବତା । ଏହା ସମସ୍ତେ ଜାଣି ରଖନ୍ତୁ ।''

ନାରଦ ଓ ଦେବୀ ସରସ୍ୱତୀ ସଙ୍ଗୀତର ଝଙ୍କାର ତୋଳିଲେ । ସେତେବେଳେ ପାର୍ବତୀ ବିଶ୍ୱରୂପଧାରଣକାରୀ ଗଣପତିଙ୍କୁ ପ୍ରଣାମ କରିବାକୁ ଉଦ୍ୟତ ହେଲେ । କିନ୍ତୁ ଗଣପତି ତାଙ୍କୁ ରୋକି ଦେଲେ ଓ କହିଲେ, ''ମା ! ଆପଣ ଇଏ କ'ଣ କରୁଛନ୍ତି ?'' ଏହା କହି ସଙ୍ଗେ ସଙ୍ଗେ ଗଣପତି ବିଶ୍ୱରୂପ ସମ୍ବରଣ କରି ଶିଶୁ ବିନାୟକ ରୂପେ ଜନନୀ ପାର୍ବତୀଙ୍କୁ ପ୍ରଣାମ କଲେ ।

ଏହା ଦେଖି ପାର୍ବତୀ ସ୍ତମ୍ଭୀଭୂତ ହେଲେ । ପୁତ୍ରର ବିଶ୍ୱରୂପ ପ୍ରତି ତାଙ୍କର ଗଭୀର ସମ୍ମାନ ଜାଗ୍ରତ ହେଲା । ପୁନଶ୍ଚ ପୁତ୍ରର ଶିଶୁ ସ୍ୱରୂପ ପ୍ରତି ତାଙ୍କର ସ୍ନେହ ସୃଷ୍ଟି ହେଲା । ସେ ପୁତ୍ରକୁ ସ୍ନେହରେ କୋଳାଗ୍ରତ କରିବାକୁ ଚାହିଁଲେ ।

ପୁତ୍ର ବିଘ୍ନେଶ୍ୱର ପାଇଁ ତାଙ୍କର ମନରେ ବାତ୍ସଲ୍ୟଭାବ ଜାଗ୍ରତ ହେଲା । ପୁତ୍ର ଗଣେଶ ମାତାଙ୍କ ମନୋଭାବ ବୁଝିପାରି ସ୍ମିତ ହସିଲେ ।





# ପରିଶ୍ରମର ଫଳ ମିଠା

ଅନେକ ଦିନ ତଳର କଥା । ଛୋଟ ଏକ ଗାଁ ଥିଲା । ସେଠାରେ ଜଣେ କୃଷକ ବେଶ୍ ପରିଶ୍ରମ କରି ଚଳୁଥିଲା । ତାଙ୍କର ପରିବାର ବେଶ୍ ବଡ ଥିଲା । ପରିବାରରେ ଥିଲେ ପିତା, ମାତା, ପତ୍ନୀ ଓ ଚାରୋଟି ପୁଅ ଝିଅ । ତା' ସହିତ ଥିଲା ଜଣେ ଛୋଟା ଭାଇ । କୃଷକଟି ପରିବାରର ସମସ୍ତ ସଦସ୍ୟଙ୍କୁ କାମ କରିବାକୁ ପ୍ରୋତ୍ସାହନ ଦେଉଥିଲା । ସେ ସବୁବେଳେ କହୁଥିଲା: ପରିଶ୍ରମର ଫଳ ମିଠା ।

ତା'ର ଜମି ପାଖରେ ଏକ ଆମ୍ବ ଗଛ ଥିଲା । ଦ୍ୱିପହର ବେଳେ ଏହି ଆମ୍ବ ଗଛର ଛାଇରେ ବସି ସେ ଦିପହର ଖାଦ୍ୟ ଖାଉଥିଲା । ଘରେ କିଛି ପୂଜା ପାର୍ବଣ ପଡିଲେ, ସେ ଆମ୍ବପତ୍ରରେ ଘରକୁ ସଜାଉଥିଲା । ଆମ୍ବ ସମୟରେ ଘରେ ସମସ୍ତେ ଖୁସୀରେ ଆମ୍ବ ଖାଉଥିଲେ । ଆମ୍ବ ଗଛଟି ତାଙ୍କ ପରିବାର ପାଇଁ ପ୍ରକୃତରେ ଥିଲା ଅମୃତର ବୃକ୍ଷ ।

ଆମ୍ବଗଛରେ ଜଣେ ବନଦେବୀ ବାସ କରୁଥିଲେ । ସେ ସେଠାରେ ବହୁ ବର୍ଷଧରି ରହି ଆସୁଥିଲେ । କୃଷକ ଜଣକ ତା'ର ଜମିରେ ପ୍ରଚୁର ପରିଶ୍ରମ କରି ଫସଲ କରୁଥିଲା । ଫସଲରୁ କୃଷକକୁ 'ଯେଉଁ ଲାଭ ହେଉଥିଲା, ସେଥିରେ ସେ ତାର ପରିବାରର ଭରଣ ପୋଷଣ କରି ବେଶ୍ ଚଳିଯାଉଥିଲା । ତଥାପି ସେ ବେଶ୍ କଷ୍ଟ କରି ଚଳୁଥିଲା । ବନ ଦେବୀ ବହୁବର୍ଷରୁ ଏହା ଦେଖି ଆସୁଥିଲେ ।

ଦିନେ ବନଦେବୀ କ୍ଷେତରେ କାମରେ ଲାଗିଥିବା ପରିବାର ବର୍ଗଙ୍କୁ ଦେଖି ଭାବିବାକୁ ଲଗିଲେ: ଗରୀବ ହେଲେ ମଧ୍ୟ ଏମାନେ ବେଶ୍ ପରିଶ୍ରମ କରୁଛନ୍ତି । ତେବେ ଗରୀବ୍ ରୁ ଧନୀହେଲେ ମଧ୍ୟ, ଏ କଦାଚିତ୍ ତାର ପରିଶ୍ରମ ଛାଡୁନାହିଁ । ସୁଖରେ ଦିନ କଟାଇବା ପାଇଁ ଏ ଯେପରି ଆଦୌ ମନ କରୁ ନାହିଁ । ଏପରି ନୁହେଁତ, କାମରେ ପ୍ରଚୁର ପଇସାର ଲୋଭ ଲାଗିଛି ?''

ଧୀରେ ଧୀରେ କୃଷକଟି ଧନୀ ହେବାକୁ ଲାଗିଲା ଓ ପାଖରେ ତିନି ଏକର ଜମି କିଣି ଦେଲା । ବନଦେବୀ ଜାଣିଥିଲେ ଏପରି ଘଟିବା ସ୍ୱାଭାବିକ୍ ।

ସେ ବର୍ଷ ବର୍ଷା ଆରମ୍ଭ ହେବା ମାତ୍ରେ



ଶୁଭବେଳା ଦେଖି କୃଷକ ତା'ର ନୂଆ କ୍ଷେତରେ ହଳ ଚଳେଇଲା । କୃଷକର ଏପରି ପରିଶ୍ରମ ଦେଖି ବନଦେବୀଙ୍କ ମନରେ ଦୟା ହେଲା ।

ସେଦିନ ଜମିକାମ ଶେଷକରି ଘରକୁ ଫେରୁଥିବା ବେଳେ ବନଦେବୀ ଲୋକଟି ଉପରେ ଖୁସୀ ହୋଇ କହିଲେ: ''ହେ ବତ୍ସ, ମୁଁ ଲୋକଙ୍କୁ କଷ୍ଟ କରିବା ଦେଖିଚି । ସେମାନେ କଷ୍ଟ କରି ସୁଖରେ ରହନ୍ତି । କିନ୍ତୁ ତୁ କଷ୍ଟପରେ କଷ୍ଟ କରି ଯାଉଛୁ । ମୁଁ ତୋତେ ସୁଖୀ ଦେଖିବାକୁ ଚାହେଁ । କୁହତ, ତୁ ମୋ ଠାରୁ କି ପ୍ରକାର ବରଦାନ ଆଶା କରୁଛୁ ?''

କୃଷକଟି ଦେବୀଙ୍କୁ ପୁନର୍ବାର ନମସ୍କାର କରି କହିଲା: ମୁଁ ଯେହେତୁ କଷ୍ଟ କରୁଛି, କଠିନ ପରିଶ୍ରମ କରୁଛି ଆପଣ ମତେ ଭଲ ପାଉଛନ୍ତି । ଆପଣ ମତେ ଧନ ଦେଲେ ମୁଁ ତ ଆଉ କଷ୍ଟ କରିବି ନାହିଁ । ସେପରି ଅବସ୍ଥାରେ ମତେ କଣ ଦେଖିବାକୁ ଚାହାଁନ୍ତି ? ଆପଣ ମତେ ଭଲ ପାଇବା ହିଁ, ମୋ ପାଇଁ ବହୁତ ଅଧିକ । ମତେ ଧନର ଆବଶ୍ୟକତା ନାହିଁ ।''- ଏହା କହି କୃଷକ ସେଠାରୁ ଚାଲିଗଲା ।

ଏହାର ଦୁଇ ଦିନପରେ କୃଷକ ଯେତେବେଳେ ଜମିରେ ହଳ କରୁଥିଲା, ହଠାତ୍ ତାର ନଙ୍ଗଳ ମୂନରେ ଏକ ବିରାଟ ବସ୍ତୁ ବାଜିଲା । କୃଷକ ଜମି ଖୋଳି ଦେଖିଲା । ତାହା ଥିଲା ଏକ ପିତ୍ତଳର ଢାଳ । ଉକ୍ତ ଢାଳରେ ସୁନା ଓ ରୂପାର ଟଙ୍କା ଭର୍ତ୍ତି ହୋଇଥିଲା ।

ସେ ଉକ୍ତ ପିତ୍ତଳ ଢାଳ କାନ୍ଧ ଉପରେ ଥୋଇ ଆମ୍ବ ଗଛ ପାଖକୁ ଆସିଲା । ସେ ବନଦେବୀଙ୍କୁ ସମ୍ବୋଧନ କରି କହିଲା: ହେ ମାତା, ହେ ଦେବୀ !''- ସେ ଦୁଇ ତିନିଥର ଯୋରରେ ଚିତ୍କାର କଲା ।

ତାର ବାରଂବାର ଡାକ ଶୁଣି ଦେବୀ କହିଲେ: ''ତୁମେ ମତେ ଡାକିଲ କି ? କୁହତ, କାହିଁକି ?''

କୃଷକଟି ଢାଳରେ ଥିବା ଧନକୁ ଦେଖାଇ କହିଲା: ''ଦେଖନ୍ତୁ ଆପଣ ଏହି ବିତ୍ତ ପ୍ରଦାନ କରିଛନ୍ତି କି ?'' ଦେବୀ କହିଲେ: ''ଆରେ ନା, ମତେ କିଛି ଜଣା ନାହିଁ ।''

କୃଷକଟି କହିଲା: ମୁଁ ଅନେକ ବର୍ଷ ହେବ ଏହି କ୍ଷେତରେ ଚାଷ କରୁଛି ଓ ମୁଁ ଭଲ କରି ଜାଣେ କ୍ଷେତ ର କେଉଁ କୋଣରେ କଣ ଅଛି । ତେବେ ମୋର ମନେ ହୁଏ ଆପଣ ବୋଧେ ବିଶ୍ୱାସ କରନ୍ତି, ମୁଁ କାମ କରିବି ନାହିଁ, କଷ୍ଟ କରିବି ନାହିଁ, ଓ ସୁଖରେ ରହିବି । ଯଦି ଏପରିକଥା ତେବେ ମୁଁ ପ୍ରସ୍ତୁତ ।''- ଏହା କହି କୃଷକଟି ପିତ୍ତଳ ଢାଳଟି କାନ୍ଧରେ ଥୋଇ ଚାଲିଗଲା ।

ପରବର୍ତ୍ତୀ ଦିନ କୃଷକ ସହିତ ଦଶଜଣ କୁଲି ଆସିଲେ । ଦେବୀ ତାଙ୍କୁ ଦେଖି ବେଶ୍ ଖୁସୀ

ହେଲେ । କିନ୍ତୁ ତାଙ୍କର ଖୁସୀ ବେଶୀ ସମୟ ଅଟକି ରହିଲା ନାହିଁ । କାମ କରିବା ପାଇଁ ଯେଉଁମାନେ ଆସିଥିଲେ ସେମାନଙ୍କ ମଧ୍ୟରୁ ଦୁଇଜଣ କାମ କରିବା ପରି ମନେହେଉଥିଲେ । ଅନ୍ୟ ମାନେ ପ୍ରାୟ ବୃଦ୍ଧ ଓ ଅଯୋଗ୍ୟ ଥିଲେ ।

କୃଷକଟି ସମସ୍ତଙ୍କୁ ଭିନ୍ନ ଭିନ୍ନ କାମ ଦେଲା । ସେ ବି ତାଙ୍କ ସହିତ କାମ କରୁଥିଲା । ଦ୍ୱି-ପ୍ରହରକୁ କୃଷକର ପତ୍ନୀ ଖାଦ୍ୟନେଇ ଆସିଲା । ସମସ୍ତେ ମିଳିମିଶି ଉକ୍ତ ବୃକ୍ଷ ତଳେ ଖାଦ୍ୟ ଖାଇବାକୁ ଲାଗିଲେ ।

ଅଧଘଣ୍ଟାପରେ ସମସ୍ତେ ସମସ୍ତଙ୍କର ଦୁଃଖସୁଖ କହିବା ଆରମ୍ଭ କଲେ । କୃଷକଟି ତାଙ୍କର କଷ୍ଟକଥା ଶୁଣିଲାପରେ ତାଙ୍କୁ ଉଚିତ୍ ମାର୍ଗ ଦେଖାଇଲା ।

‘‘ଗୋଟିଏ କଥା ନିଶ୍ଚେ ମନେ ରଖିବ । ଭଗବାନ ମଣିଷକୁ ସୃଷ୍ଟି କରି ନାହାନ୍ତି, ହାତ ଉପରେ ହାତ ପକେଇ ବସି ରହିବା ପାଇଁ । ଯଥାସାଧ୍ୟ ପରିଶ୍ରମ କରି ସୁଖରେ ରହିବା ପାଇଁ ଅନୁପେରିତ କରିଛନ୍ତି । ତେଣୁ ଯେ ପର୍ଯ୍ୟନ୍ତ ପିଣ୍ଡରେ ପ୍ରାଣ ଅଛି, ସେ ପର୍ଯ୍ୟନ୍ତ ଆମେ କାମ କରିବା ଉଚିତ୍ ।

ସୂର୍ଯ୍ୟାସ୍ତ ପୂର୍ବରୁ କୁଲି ମାନେ କାମ କରିବା ବନ୍ଦ କରିଦେଲେ । କୃଷକ, ପାଖରେ ଥିବା ଏକ କୁଡିଆ ଘରକୁ ଗଲା । ବନଦେବୀ ମଧ୍ୟ ତା ପଛେ ପଛେ କୁଡିଆ ମଧ୍ୟକୁ ପ୍ରବେଶ କଲେ ।

କୃଷକଟି ପିତ୍ତଳ ଡାଳରୁ ରୂପାର କେତୋଟି ଟଙ୍କା ବାହାର କଲା ଓ କୁଲିମାନଙ୍କୁ ଉଚିତ୍ ପ୍ରାପ୍ୟ ଦେଲା ।

‘‘ଏହି କୃଷକ ଧନ ଦେବାରେ କୌଣସି କାର୍ପଣ୍ୟ କଲା ନାହିଁ । ତେବେ ଏପରି ଜଣେ ଛୋଟାକୁ କାହିଁକି କାମକୁ ଡାକି ଆଣିଲା ?’’ ବନଦେବୀ ନିଜକୁ ନିଜେ ପ୍ରଶ୍ନ କଲେ ।



କୁଲିମାନେ ଚାଲିଯିବାପରେ କୃଷକଟି ବନଦେବୀଙ୍କୁ କହିଲା: ହେ ମା, ଆପଣ ଦେଖିଲେନା ! ଅପାଣଙ୍କ କହିବା ପ୍ରକାରେ ମୁଁ କ୍ଷେତରେ କାମ କରିବାପାଇଁ କୁଲି ଡାକି ଆଣିଲି ଓ ମଜୁରୀ ଦେଲି । ଏବେ ତୁମେ ପ୍ରସନ୍ନ ଅଛତ ?’’

‘‘ମୁଁ ଓ ଖୁସୀ ! ମୁଁ କିପରି ବା ଏହି ପରିସ୍ଥିତିରେ ଖୁସୀ ରହିପାରିବି ? ତୁମେ ତ କ୍ଷଣଟିଏ ପାଇଁ ମଧ୍ୟ ମୋ ପାଖରେ ବସିଲ ନାହିଁ । ତେଣୁ କୁଲି ଆଣି କାମ କରିବାରେ କି ଲାଭ ?’’- ଦେବୀ କହିଲେ ।

‘‘ତୁମେ ମତେ ଠିକ୍ କଥା ପଚାରିଲ । ଆଜି ଯାଏଁ ଯେ କେହି ମୋ କ୍ଷେତରେ କାମ କରିବାକୁ ଆସିଛନ୍ତି, ସମସ୍ତେ ପ୍ରାୟ କାମଠକ । ତେଣୁ ତାଙ୍କୁ କେହି କାମ ଦିଅନ୍ତି ନାହିଁ । ମୁଁ ପାଖରେ ପାଖରେ ରହି ତାଙ୍କୁ କାମ କରାଏ । ତୁମେ ମତେ ଯେଉଁ

ଧନଦେଲ, ମୁଁ ସେଥିରୁ ସେମାନଙ୍କୁ ମଜୁରୀ ଦେଲି । ଏବେ କହନ୍ତୁ ନା ତୁମେ ଖୁସୀ !''- ହସି ହସି କୃଷକଟି ପଚାରିଲା ।

ତାପରେ ବନଦେବୀ କହିଲେ: ତୁମକଥା ଶୁଣି ମନ ତୁଷ୍ଟ ହେଲା । ଦେବତାଙ୍କ ମଧରେ ମୋ ପରି ପଥର ଓ ମଣିଷଙ୍କ ମଧରେ ତୁମପରି ଠାକୁର ଅଛନ୍ତି ! ତୁମେ ତୁମପରି ରୁହ ଓ ଭଲକାମରେ ଲାଗିଯାଅ । ତୁମକୁ ଯେତେ ଧନରତ୍ନଲୋଡା ମୁଁ ଦେବି ।''

ଦେବୀଙ୍କ କଥା ଶୁଣି କୃଷକ ବିନୟପୂର୍ବକ କହିଲା: ''ମା, ଏପରି କରନ୍ତୁ ନାହିଁ । ବିନା କଷ୍ଟରେ ମିଳୁଥିବା ଧନ ଓ ପରିଶ୍ରମ ନ କରି ପାଇଥିବା ଧନ ନେବା ଅନୁଚିତ ।

ନୂଆ ଜମିରେ ଯଦି ଭଲ ଫସଲ ହୁଏ, ତେବେ ସେଥିରୁ ମୁଁ ପଇସା ଦେଇ କୁଲି ମାନଙ୍କୁ ଘରକୁ ଫେରାଇଦେବି । ତାପରେ ଅନ୍ୟାନ କୁଲିମାନଙ୍କ ସହ ମିଶି ଆମେ କାମ କରିବୁ । ଏହାଠାରୁ ଅଧିକ ମୁଁ କିଛି ଚାହେଁ ନା ।''

ଦେବୀ ତାହାର କଥା ଧ୍ୟାନ ପୂର୍ବକ ଶୁଣିଲେ ଓ ତାର ମୁହଁରେ ଆତ୍ମ ବିଶ୍ୱାସ ଓ ସ୍ୱାଭିମାନକୁ ଲକ୍ଷ୍ୟ କରି ଖୁସିହେଲେ ।

''ଠିକ୍ ଅଛି । କଷ୍ଟଫଳ ଅଧିକ ମିଠା । ଯେ ପରିଶ୍ରମ କରେ ତାଙ୍କୁ ଇହଲୋକ ଓ ପରଲୋକରେ ସୁଖ ମିଳେ ।''- ଏତିକି କହି ଦେବୀ କୃଷକକୁ ଆର୍ଶିବାଦ ପ୍ରଦାନ କଲେ ।

ଏହାପରଠାରୁ ପୂର୍ବବତ୍ତ କୃଷକ ତାର ଜମିରେ ପରିଶ୍ରମ କରିବାକୁ ଲାଗିଲା । ଜମିରେ ଯେତେବେଳେ ବି ସେ ଅନ୍ୟ କାହାକୁ ନେଇ କାମ କରୁଥିଲା, ସେମାନଙ୍କୁ କଷ୍ଟ କରିବା କେତେ ଜରୁରୀ କହିବା ସହିତ ସେମାନଙ୍କୁ ଉଚିତ୍ ପ୍ରାପ୍ୟ ପ୍ରଦାନ କରୁଥିଲା ।

ଗ୍ରାମରେ ତାର କର୍ମଦକ୍ଷତା ଓ ସଚ୍ଚୋଟପଣ ସମ୍ପର୍କରେ କହିବା ଆରମ୍ଭ କଲେ । ସମସ୍ତେ ତାଙ୍କର କାର୍ଯ୍ୟକୁ ସମ୍ମାନ ଦେଲେ । ଏବଂ କାର୍ଯ୍ୟରେ ଲଗାଉଥିଲେ ଧୀରେ ଧୀରେ ସେ ଯେତିକି ଧନୀ ହେଉଥାଏ, ତାର ପରିଶ୍ରମ ସେତେ ଅଧିକ ବଢି ବଢି ଯାଉଥାଏ । ଧନ ଅର୍ଜନ ପାଇଁ ସତ୍ କର୍ମକୁ ସେ ଆଦରି ନେଇଥିଲା । କର୍ମଯୋଗୀପରି ତାର ଜୀବନ ବେଶୀ ପ୍ରତିଭାତ ହେଲା । ଦେବୀଙ୍କର ଆଶୀର୍ବାଦ ଫଳିଲା ।





# ବଜରଙ୍ଗର ସାହସ

ବଜରଙ୍ଗ ଥିଲା ବଳରାମ ପୁରର ଅଧିବାସୀ । ସେଦିନ କିନ୍ତୁ ସେ କ୍ରୋଧରେ ଜଳୁଥାଏ । ସେ ତାର ଅଣ୍ଟାରୁ ଏକ ଖଣ୍ଡା ବାହାର କରି ଏକ ପଥରରେ ଚିକଣ କରୁଥାଏ ! ବିଗତ କିଛି ଦିନ ତଳେ ତାର ଓ ବୀରବାହୁ ମଧ୍ୟରେ ଜମିଜମା ବ୍ୟାପାରରେ ବେଶ୍ ବିବାଦ ଉପୁଜିଥିଲା । ପ୍ରକୃତରେ ଗଣ୍ଡୋଗଳଟି ଅତି ସାଧାରଣ କଥାରୁ ହୋଇଥିଲା । କିନ୍ତୁ ଦେଖୁ ଦେଖୁ ବାଦ-ବିବାଦ ଯାଇ ପହଞ୍ଚିଲା ଅତ୍ୟଧିକ କ୍ରୋଧରେ । ସେ ସମୟରେ ବଜରଙ୍ଗ ରାଗି ଯାଇ କହିଲା: ''ଆରେ ବୀରବାହୁ ତୁ ଦେଖିବୁ ମୁଁ ତତେ ଯଦି ଖଣ୍ଡାରେ ହାଣି ନ ମାରିଛି, ତେବେ ମୋ ନାଁ ବଜରଙ୍ଗ ନୁହେଁ । ତୁ ବୋଧେ ଜାଣୁନା, ମୁଁ ଏ ଅଞ୍ଚଳରେ ଭୀମ ଭାବେ ପରିଚିତ ।''- ଏହା କହି ସେ ଘରକୁ ଫେରିଗଲା ।

ବଜରଙ୍ଗ ନିଜର ଖଣ୍ଡା ଧାର କରି ବୀରବାହୁକୁ ଗାଳି କରୁଥାଏ । ଏକଥା ଗ୍ରାମ ସାରା ରାଷ୍ଟ୍ର ହୋଇଗଲା । କିଛି ଲୋକ ତା ଘର ଆଗରେ ଏହି ଦୃଶ୍ୟ ଦେଖିବା ପାଇଁ ଜମା ହୋଇଗଲେ । ଗ୍ରାମର ଦୁଇ ତିନିଜଣ ପୁରୁଖା ଲୋକ ବଜରଙ୍ଗକୁ କହିଲେ: ତୁମ ଦୁଇଜଣଙ୍କ ଜମି ପାଖରେ ପାଖରେ ଅଛି । ଦୁହେଁ ଦୁହିଁଙ୍କ ସାହାଯ୍ୟ ଲୋଡ଼ । ତେବେ ତୁମ ଦୁଇଜଣଙ୍କ ଭିତରେ ଶତ୍ରୁତା କାହିଁକି ? ନିଜ କ୍ରୋଧରୁ ଏଥର ନିବୃତ୍ତ ରୁହ ।''

କିନ୍ତୁ ବଜରଙ୍ଗ କାହାରି କଥା ଶୁଣିଲା ନାହିଁ । ସେ ସେହି ଚକ୍ ଚକ୍ ତଲୱାର ନେଇ ବୀରବାହୁର ଘରକୁ ବାହାରିଗଲା । ପିଲାମାନେ ଏପରି ମଜାଦେଖିବା ପାଇଁ ତା'ର ପଛେ ପଛେ ଗଲେ । ସେ ଯେତେବେଳେ ବୀରବାହୁର ଘରେ ପହଞ୍ଚିଲା, ଜାଣିଲା ବୀରବାହୁ ଘରେ ନାହିଁ, ଜମିରେ ହଳ କରୁଛି । ବଜରଙ୍ଗ ଜୋର୍‌ରେ ଖଣ୍ଡା ହଲେଇ ହଲେଇ ପାଟିକରି ଜମି ଆଡ଼କୁ ଗଲା । ଜମି ପାଖରେ ପହଞ୍ଚିଲାବେଳକୁ ସେଠାରେ ଅନେକ ଗାଁ ଲୋକ ରୁଣ୍ଡ ହୋଇ ସାରିଥିଲେ ।

ବୀରବାହୁ ଜମିର ହିଡ଼ ଉପରେ ବସି ଦାନ୍ତ ଘଷୁଥିଲା । ସେ ଦେଖିଲା ବଜରଙ୍ଗ ଖଣ୍ଡାନେଇ ତା ଆଡ଼କୁ ଆସୁଛି । କିନ୍ତୁ ସେ ଟିକିଏ ବି ଡରିଲା ନାହିଁ । ଭୟ ତାକୁ କାବୁ କରିପାରିଲା ନାହିଁ ।

ଥରୁଟିଏ ସେ ତାକୁ ଦେଖିଲା ଓ ନିଜ କାମରେ ଲାଗିଲା ।

ବଜରଙ୍ଗ ଲମ୍ବା ଲମ୍ବା ପାଦ ପକେଇ, ଖଣ୍ଡାକୁ ପବନରେ ହଲେଇ ହଲେଇ ବୀରବାହୁ ପାଖକୁ ଆସିଲା ଓ ଜୋର୍‌ରେ ଚିତ୍କାର କରି କହିଲା: ଆରେ, ତୁ ମତେ ଠିକ୍‌ରେ ଚିହ୍ନି ନାହୁଁ । ମୋ ହାତରେ ଯେଉଁ ଶାଣୀତ ଖଡ୍‌ଗ ଅଛି, ଦେଖୁଚୁ ତ ? ମୁଁ ସେଥିରେ ତତେ ଖଣ୍ଡ ଖଣ୍ଡ କରିଦେବି । ମୋର ହାତରେ ଯେଉଁ ଶାଣୀତ ତଲ୍‌ୱାର ଅଛି ତାକୁ ଟିକେ ମନଦେଇ ଦେଖ୍ ! ଏବେ ଏବେ ମୁଁ ଏହାର ଧାର ଦେଇଛି । ଏହି ଖଣ୍ଡାରେ ମୁଁ ତତେ ଖଣ୍ଡ ଖଣ୍ଡ କରିଦେବି ।''- ଏତିକି କହି ସେ ଖଣ୍ଡା ଉପରକୁ ଉଠାଇଲା ।

ଲୋକେ ଜାଣିଲେ ବଜରଙ୍ଗ ପ୍ରକୃତରେ କଥା କହୁନାହିଁ, ବରଂ ଆସିଛି ମାରିଦେବା ପାଇଁ । ଲୋକମାନେ ତାକୁ ଜୋର୍‌ରେ ଧରି ନେଲେ ଓ ବହୁ ଦୂରକୁ ନେଇଗଲେ ।

ଏତେ ସବୁ ହେବାପରେ ମଧ୍ୟ ବୀରବାହୁ ଯେପରି ବସିବା କଥା, ଚୁପ୍ ଚାପ୍ ସେପରି ବସି ରହିଲା । ଏସବୁ ଘଟଣାର ପ୍ରଭାବ ତା ଉପରେ କିଛି ପଡୁନଥାଏ । ସେ ବଜରଙ୍ଗକୁ ସାଧାରଣ ଦୃଷ୍ଟିରେ ମଧ୍ୟ ଦେଖୁନଥାଏ ।

ଶ୍ୟାମ ନାମକ ଜଣେ ବ୍ୟକ୍ତି ବୀରବାହୁ ପାଖକୁ ଆସି କହିଲା: 'ତୁମେ ଏମିତି କାହିଁକି କରୁଛ ? ଏପଟେ ବଜରଙ୍ଗ ଏକ ଲମ୍ବା ଖଣ୍ଡା ଧରି ତୁମକୁ ମାରିବାକୁ ଆସିଛି ଆଉ ତୁମେ ଚୁପ୍ ଚାପ୍ ବସି ରହିଛ ! ଧରା ଯାଉ ଯଦି କିଛି ହୋଇଗଲା, ତୁମେ କଣ କରି ପାରିବ ? ଏପରିକି ତୁମକୁ ମାରିବାକୁ



ଆସିଥିବା ବଜରଙ୍ଗଙ୍କୁ ତୁମେ ଆଖି ଟେକି ଅନଉ ନାହଁ । ପ୍ରକୃତରେ ତୁମର ସାହସିକତାକୁ ପ୍ରଶଂସା କରିବାକୁ ହେବ ।'' ''ତୁମେ ସେଠାକୁ ଯାଅ ଓ ଯିଏ ତାକୁ ଧରି ରଖିଚି, ତାକୁ କୁହ, ସେ ତାକୁ ଛାଡି ଦେବ ।''- ବୀରବାହୁ ଶ୍ୟାମକୁ କହିଲା ।

ଶ୍ୟାମ ବୁଝିପାରିଲା ନାହିଁ, ବୀରବାହୁ ବଜରଙ୍ଗଙ୍କୁ କଣ ପାଇଁ ଛାଡିଦେବାକୁ କହୁଚି । ପ୍ରକୃତରେ ତ ବଜରଙ୍ଗ ଜୋରରେ ଖଣ୍ଡା ହଲାଉଛି ଓ ଚିତ୍କାର କରୁଛି । ଜୋର୍‌ରେ ଗାଳି ମଧ କରୁଥାଏ । ପ୍ରକୃତରେ ବୀରବାହୁର ନିଜର ପ୍ରାଣ ପ୍ରତି କଣ ଭୟ ନାହିଁ ? ମାନିବାକୁ ପଡିବ ତାର କାର୍ଯ୍ୟ ଓ ସାହସକୁ ! ଏହାଭାବି ଶ୍ୟାମ ଲୋକଙ୍କ ଭିତରକୁ ଚାଲିଗଲା । ଯେଉଁ ଲୋକଟି ବଜରଙ୍ଗଙ୍କୁ ଜୋର୍‌ରେ ଭିଡି ଧରିଥିଲା ତାକୁ ଶ୍ୟାମ ଯାଇ ଚୁପ୍ କରି କହିଲା: ଭାଇ ଗୋଟେ କାମ କର । ତାକୁ ଛାଡି ଦିଅତ । ଦେଖାଯାଉ କଣ ହେଉଛି !''

ବାସ୍, ଏହାପରେ ଲୋକେ ବଜରଙ୍ଗଙ୍କୁ ସତକୁ ସତ ଛାଡି ଦେଲେ । ଦେଖାଗଲା ଧୀରେ ଧୀରେ ବଜରଙ୍ଗ ଖଣ୍ଡା ଧରି ବୀରବାହୁ ଆଡକୁ ଯାଉଛି । କିନ୍ତୁ ଏଥର ସେ ଜାଣିପାରିଲା ଯେ, ତାକୁ ଅଟକେଇବାକୁ କେହି ନାହିଁ । ଏଥର ସେ ଆଉ ଆଗକୁ ନଯାଇ ଯେଉଁଠି ଠିଆ ହେବା କଥା, ସେଠି ଠିଆ ହୋଇ ବୀର ବାହୁକୁ ଡାକିଲା: 'ଆରେ ବୀରବାହୁ, ତୋର ଆଉ ଅଳ୍ପଦିନ ବାକି ଅଛି । ତେଣୁ ତୁ ବଞ୍ଚିଗଲୁ । କିନ୍ତୁ ମୋରି ହାତରେ ତୋର ମୃତ୍ୟୁ ଲେଖାଅଛି । ସେ ଦିନ ଏମାନଙ୍କ ମଧ୍ୟରୁ କେହି ତତେ ରକ୍ଷା କରିପାରିବେ ନାହିଁ ।''- ଏହା କହି ବଜରଙ୍ଗ ସେଠାରୁ ଚାଲିଗଲା ।

ସେ ଚାଲିଯିବା ପରେ ବୀରବାହୁ ଉପସ୍ଥିତ ଜନତାଙ୍କ ଉଦ୍ଦେଶ୍ୟରେ କହିଲା: ଆପଣମାନେ ଦେଖିଲେ ତ ! ତାକୁ ଛାଡିଦେବା କ୍ଷଣି ସେ କିପରି ଦୁମ୍ ଦୁମ୍ କରି ଚାଲିଗଲା । ସେ ଜାଣିଥିଲା, ଆପଣ ମାନେ ତାକୁ ଏପରି କରିବାରୁ ରକ୍ଷା କରିବେ । ତେଣୁ ସେ ଏପରି ଛଳନା କରୁଥିଲା । କେବଳ ଖଣ୍ଡା ଦେଖାଇ ଏଠି ସେ ନାଟକ କରୁଥିଲା । ଯିଏ ମାରିବାକୁ ଚାହେଁ, ସେ କଣ ପାଇଁ ଲୋକଙ୍କୁ ସାଙ୍ଗରେ ନେଇ ଆସିବ । ଭୁକିଲା କୁକୁର କାମୁଡେ ନାହିଁ । ଯିଏ କାମୁଡେ ସେ ଭୁକେ ନାହିଁ । ମୁଁ ଠିକ୍ କହିଲି ନା ? ଏହା ତ କେବଳ କହିବା କଥା, କିନ୍ତୁ ଏହା ସମ୍ପର୍କରେ ଏକ କାହାଣୀ ରହିଛି ।''

ଏଥର ଲୋକେ ବୁଝିପାରିଲେ ଯେ କାହିଁକି ବୀରବାହୁ ଏତେ ସଙ୍କୋଚ ଓ ନିର୍ଭୟତାର ସହିତ ବସିଥିଲା ।



# ବାପା ଘରେ ନାହାଁନ୍ତି



ଦକ୍ଷିଣ ସମୁଦ୍ର କୂଳରେ କଶ୍ୟପ ନାମକ ଜଣେ ଛୋଟ ବ୍ୟବସାୟୀ ରହୁଥିଲା । ତା ସହିତ ଥିଲେ ତାର ପତ୍ନୀ ଓ ପୁତ୍ର । ବ୍ୟବସାୟୀର ପୁଅଟି ବେଶ୍ ମିଠା କଥାବାର୍ତ୍ତା କହେ ଓ ଦେଖିବାକୁ ବି ବଡ ସୁନ୍ଦର । ତେଣୁ କଶ୍ୟପ ପୁଅକୁ ବେଶ୍ ଭଲପାଏ । ଯଦି ଘରକୁ କେହି ବୁଲି ଆସୁଥାଏ, କଶ୍ୟପ ନିଜ ପୁଅକୁ ତାଙ୍କ ସାମ୍ନାକୁ ନେଇ ଆସି କହେ: ଅତିଥିଙ୍କ ସହ କଥା ହୁଅତ ପୁଅ ! ବାପାଙ୍କ କଥା ଶୁଣି ପୁଅ ବେଶ୍ ଖୁସୀରେ ମିଠା ମିଠା କଥା କହିଚାଲେ । ଯେତେବେଳେ ପୁଅ ଖୁସୀରେ ମିଠା କଥା କହିଚାଲେ, ସେତେବେଳେ କଶ୍ୟପର ଖୁସୀ କହିଲେ ନସରେ !

କଶ୍ୟପର କପା ବ୍ୟବସାୟ ଥିଲା । ସେ ତୁଳା କିଣେ ଓ ବିକେ । ଏତେବେଳେ ଖବର ମିଳିଲା ଯେ, ପାଖ ସହରରେ ତୁଳା ଶସ୍ତାରେ ପ୍ରଚୁର ପରିମାଣରେ ମିଳୁଚି । କିନ୍ତୁ କଶ୍ୟପ ପାଖରେ ଏତେ ବେଶୀ ଟଙ୍କା ନ ଥିଲା, ଯେଉଁଥିରେ ସେ ବେଶି ତୁଳା କିଣିପାରିବ । ତେଣୁ ସେ ଜଣେ ମହାଜନ ପାଖରୁ ଟଙ୍କା ଧାର ମାଗିବାକୁ ଗଲା । ତିନିମାସରେ ସୁଝି ଦେବ କହି ସେ ତାଠାରୁ ପାଞ୍ଚଶହ ଟଙ୍କା ଆଣିଲା । ସେହି ଟଙ୍କାରେ ସେ ତୁଳା କିଣିଲା । ''ମୁଁ ଏବେ ଏହି ତୁଳା ବିକିବି ନାହିଁ । ଯେତେବେଳେ ଏହାର ଦାମ୍ ଅଧିକ ହେବ, ମୁଁ ଏହାକୁ ବିକିବି । ଫଳରେ ମୁଁ ଅଧିକ ଲାଭ ପାଇବି । ଏକଥା ସେ ତାର ପତ୍ନୀକୁ ଡାକି ବାରମ୍ବାର କହିଲା ।''

ପରବର୍ତ୍ତୀ ଦିନ ସେ ସହରକୁ ଯାଇ ଏକ ବଡ ଗୋଦାମ ଭଡାରେ ନେଲା । ସେ ସେହି ଗୋଦାମରେ ସବୁତକ ତୁଳା ରଖିଲା ।

ଏକ ମାସ ବିତିଗଲା । ଆକାଶରେ ଘୋଟି ଆସିଲା ମେଘ । ଧୀରେ ଧୀରେ ବର୍ଷା ହେବା

ଆରମ୍ଭକଲା । ତା'ପରେ ଆରମ୍ଭହେଲା ପ୍ରଚୁର ଝଡ଼ । ଏତେ ଯୋରରେ ବର୍ଷା ହେଲା ଯେ ବଡ ବଡ ଗଛ ଭାଙ୍ଗି ଘରର କାନ୍ଥ ଉପରେ ପଡିଲା । କାନ୍ଥ ଭାଙ୍ଗି, ଘର ଭୁଷୁଡ଼ି ଗଲା । ଫଳରେ ତୁଳାସବୁ ପାଣିରେ ଭିଜିଗଲା ।

ତୁଳା ସବୁ ପାଣିରେ ଭିଜି ଯିବା ଦେଖି କଶ୍ୟପର ମୁଣ୍ଡ ଘୁରାଇବାକୁ ଲାଗିଲା । ସେ ପାଗଳଙ୍କ ପରି ଇତଃସ୍ତତଃ ଘୁରି ବୁଲି ଚିତ୍କାର କଲା: ''ହେ ପ୍ରଭୁ ଏ ଭିଜା ତୁଳା ନେଇ ମୁଁ କ'ଣ କରିବି ? ଗୋଦାମର ମାଲିକର ଭଡା ଦେବାର ଅଛି । କରେ କଣ ? ମହାଜନଙ୍କୁ ମୂଳ ଓ ସୁଧ ଉଭୟ ଦେବାର ଅଛି । ନତୁବା ସେ କଦାଚିତ୍ ଚୁପ୍ ରହିବ ନାହିଁ ।''

ପତିର ଏ ଅବସ୍ଥା ଦେଖି ପତ୍ନୀ ତାକୁ ଏକ ପ୍ରସ୍ତାବ ଦେଲା । ''ତୁମେ ଗୋଟେ କାମ କର । ଯେପର୍ଯ୍ୟନ୍ତ ମହାଜନଙ୍କୁ ଫେରାଇବା ପାଇଁ ପ୍ରଚୁର ଅର୍ଥ ତୁମେ ଯୋଗଡ କରି ପାରି ନାହଁ, ସେ ଯାଏଁ ତୁମେ ଗାଁରୁ କେଉଁଆଡେ ଲୁଚି ଚାଲି ଯାଅ ।'' ସବୁଠାରୁ ଭଲହେବ, ତୁମେ ଆମର କୌଣସି ବନ୍ଧୁ ବାନ୍ଧବଙ୍କ ଘରକୁ ଚାଲିଯାଅ । ସେଠାରେ ତାଙ୍କ ଠାରୁ କିଛି ଧାର ମଧ୍ୟ ମାଗିବ ।''

''ତୁମେ ଠିକ୍ କହିଲ । ଦୁଇ ତିନି ମାସ ମଧ୍ୟରେ ତାଙ୍କୁ ଟଙ୍କା ଫେରାଇ ଦେବାର ପ୍ରତିଶୃତି ଦେଇ ଧାର୍ ବି ନେଇ ପାରିବି । ଫଳରେ ବହୁ ଅସୁବିଧାରୁ ରକ୍ଷା ପାଇଯିବି । ଆଜି ଏଇକ୍ଷଣି ବାହାରିଲି ।''- କଶ୍ୟପ କହିଲା ।



ପରବର୍ତ୍ତୀ ଦିନ ବାହାରିଲାବେଳେ କଶ୍ୟପ ପୁଅକୁ କହିଲା: ''ପୁଅ, ମୁଁ ମୋର ବନ୍ଧୁ ବାନ୍ଧବଙ୍କ ଘରୁ ବୁଲି ଆସୁଛି । ଫେରିଲାବେଳେ ତୁମ ପାଇଁ ଅନେକ କଣ୍ଢେଇ ନେଇ ଆସିବି ।''

ତିନିମାସ ସରିଗଲା ପରେ ମହାଜନ ଆସି କଶ୍ୟପ ସମ୍ପର୍କରେ ପଚାରିଲା । ମହାଜନକୁ ଦେଖି ପତ୍ନୀ କହିଲା: ସେ ବନ୍ଧୁ ବାନ୍ଧବଙ୍କ ଘରକୁ ବୁଲି ଯାଇଛନ୍ତି । ଏକ ସପ୍ତାହ ପରେ ଫେରି ଆସିବେ ।

''ହଁ, ହଁ, ମୋର ବାପା କହିଯାଇଛନ୍ତି, ସେ ଅନେକ ଖେଳଣାନେଇ ଫେରିବେ ।''- ମା'ର ପଣତକାନି ଧରି ପୁଅ କହିଲା । ମହାଜନ କୁନିପୁଅଟିକୁ ଦେଖି ହସିଦେଲା ଓ କଶ୍ୟପର ପତ୍ନୀ କୁ କହିଲା: ଗୋଟିଏ ସପ୍ତାହପରେ ପୁଣି ଆସିବି ।

ଏକ ସପ୍ତାହପରେ ମହାଜନ ପୁଣି ଆସିଲା । କଶ୍ୟପର ପତ୍ନୀ ଏଥରବି ସେଇ ଏକ ପ୍ରକାରର ଉତ୍ତର ଦେଲା । ଏଥର କିନ୍ତୁ ମହାଜନ ଏକଥା ଶୁଣିଲା ନାହିଁ ଓ ଚିତ୍କାର କରି କହିଲା: ଗୋଟିଏ ସପ୍ତାହ ଭିତରେ ଯଦି ତୁମେ ମୋର କରଜ ନସୁଝ ଦେଖିବ !''

ଗୋଟିଏ ସପ୍ତାହ ପରେ ପୁଣିଥରେ ମହାଜନ ଆସିଲା । ଦେଖିଲା କଶ୍ୟପର ସ୍ତ୍ରୀ କହୁଚି: ଆଉ ସପ୍ତାହକୁ ଆସ, ସେ ଏ ଯାଏଁ ଫେରି ନାହାନ୍ତି !'' ଏ କଥା ଶୁଣି ମହାଜନ ରାଗି ପଞ୍ଚମ ହୋଇଗଲା । ସେ ଆହୁରି ଜୋର୍‌ରେ ଚିତ୍କାର କରି କହିଲା: ତିନିଦିନ ଭିତରେ ଯଦି ଋଣ ନସୁଝ ତେବେ ଗୁଣ୍ଡା

ପଠେଇ କିପରି ଋଣ ଆଦାୟ କରାଯାଏ ଦେଖିବ ।'' - ଏହା କହି ମହାଜନ ଚାଲିଗଲା ।

ସେଦିନ ରାତିରେ କଶ୍ୟପ ଛପି ଛପି ଘରକୁ ଆସିଲା । ପତ୍ନୀ ଯେତେବେଳେ ପଚାରିଲା, ଟଙ୍କାର ବ୍ୟବସ୍ଥାହୋଇଗଲା କି, ସେ ନାହିଁ କରିଦେଲା । ତାପରେ ପତ୍ନୀ ରାଗି ଯାଇ କହିଲା: ମୁଁ ଜାଣେନା ତୁମେ କଣ କରିବ, ତେବେ ଏକ କଥା ଜାଣିଥାଅ ଯେ, ତିନିଦିନ ପରେ ମହାଜନ ଆସି ସୁଧ ମାଗିବ । ଏଥର କଶ୍ୟପ ଅନ୍ୟ କେଉଁଠିକୁ ଚାଲିଯିବାପାଇଁ ଚିନ୍ତା କଲା । ପରେ ପରେ ସେ ଭାବିଲା ମହାଜନ ନିଶ୍ଚୟ ଏ ଘର ଉପରେ ନଜର ରଖିଥିବ । ସତକୁ ସତ ମହାଜନର ଲୋକେ ଆସି ପହଞ୍ଚିଗଲେ ଓ କବାଟ ଖଟ ଖଟ କଲେ । ସେ ଆଉ କୌଣସି ଉପାୟ ନପାଇ ସ୍ତ୍ରୀ କୁ କହିଲା: ମୁଁ ଭାଡି ଉପରେ ଲୁଚିଯାଉଛି । ସେ ବଦମାସ ମତେ ଖୋଜିଲେ ମନା କରିଦେବ ।''

କଶ୍ୟପର ପୁଅ ଏ ସବୁ ଆଖିରେ ଦେଖୁଥିଲା । ସୁଧ ଅସୁଲ କରୁଥିବା ସାହୁକାରର ସହିବା ଶକ୍ତି ସୀମା ପାର କରିଗଲା । ସେ ଜୋର୍ ଜୋର୍‌ରେ କବାଟ ପିଟିଲା । କଶ୍ୟପର ସ୍ତ୍ରୀ କବାଟ ଖୋଲିଲା ଓ ବାହାରକୁ ଆସି କହିଲା: ''ତୁମେ କିଏ କି ? କାହିଁକି କବାଟ ଖଡ୍ ଖଡ୍ କରୁଛ ?''

''ମତେ ପଚାରୁଛ, ମୁଁ କିଏ ? ତୁମର ସ୍ୱାମୀଙ୍କୁ ଡାକ, ମୁଁ କିଏ, ସେ କହିବେ ।''- ବ୍ୟଙ୍ଗ କରି ସାହୁକାର କହିଲା ।

''ସେ ଘରେ ନାହାନ୍ତି । ମୋ କଥା ବିଶ୍ୱାସ କରୁନାହଁତ ଭିତରକୁ ଆସି ଦେଖିଯାଅ ।''- କଶ୍ୟପର ପତ୍ନୀ କହିଲା । ମହାଜନ ସହିତ ତାର ସମସ୍ତ ସାଥୀ ଭିତରକୁ ଆସି କଶ୍ୟପକୁ ଖୋଜିବା ଆରମ୍ଭ କଲେ । କଶ୍ୟପର ପୁଅ ମଧ୍ୟ ତାର ସାଙ୍ଗରେ ଥାଏ । ସାହୁକାର କଶ୍ୟପକୁ ଖୋଜି ପାଇଲା ନାହିଁ । ଏମିତି ଖୋଜା ଖୋଜିରେ କଶ୍ୟପର ପୁଅ ମନେ କଲା ତା'ର ପିତା ଓ ସାହୁକାର ଲୁଚକାଳି ଖେଳୁଛନ୍ତି । ସେ ପିତାଙ୍କର ସହଯୋଗ କରିବା ପାଇଁ ହଠାତ୍ କହି ଦେଲା: ମୋର ବାପା ଭାଡି ଉପରେ ନାହାନ୍ତି ।''

ମହାଜନ ଭାଡି ଉପରକୁ ଥରୁଟିଏ ଦେଖିଲା ଓ ହସିଦେଲା । ହସି ହସି ସେ ସେହି ନିରୀହ ପିଲା ମୁଣ୍ଡରେ ହାତ ବୁଲାଇଲା । ତା'ପରେ ସେ କଶ୍ୟପର ପତ୍ନୀକୁ କହିଲା: ଏବେ ତୁମର ପତିକୁ ତଳକୁ ଆସିବାକୁ କୁହ । ତାକୁ କହ ଟଙ୍କା ଫେରାଇବା ପାଇଁ ମୁଁ ତାକୁ ଆଉ ମାସଟେ ସମୟ ଦେଉଛି ।''- ଏତିକି କହି ମହାଜନ ଘର ବାହାରକୁ ଚାଲିଗଲା ।



ଘରର ବାହାରକୁ ଆସି ଯେତେବେଳେ ମହାଜନ ଓ ତାର ଲୋକମାନେ ଫେରିଯିବାକୁ ବସିଲେ, ଏ ସମୟରେ ପିଲାଟି ହସି ହସି କହିଲା: ମୋର ବାପା, ଭାଡି ଉପରେ ନାହାଁନ୍ତି । ମୋର ବାପା ଭାଡି ଉପରେ ନାହାଁନ୍ତି ।


ଚନ୍ଦ୍ରମାମୁ ପ୍ରସ୍ତୁତି
ଅଜେୟ ଗରୁଡ
13
ଚିତ୍ର: ପଣି
ରାଜାଙ୍କର ଅପହରଣ ଖବର ଶୁଣିବାପରେ ଚନ୍ଦ୍ରପୁରର ପ୍ରଜାକୂଳ ଚକିତ ରହିଗଲେ । ସେନାପତି ନରେନ୍ଦ୍ର ଦେବ ରାଜାଙ୍କ ବିଷୟରେ ଜାଣିବା ପାଇଁ ତାନ୍ତ୍ରିକ ନାଗବନ୍ଧୁକୁ ଭେଟିବାକୁ ପାହାଡ ଉପରକୁ ଚାଲିଗଲେ । ମହଲର ରକ୍ଷକ ରବିନ୍ଦ୍ରଦେବଙ୍କ ଆଦେଶରେ ଆଦିତ୍ୟଙ୍କ ଘରକୁ ଗଲେ ।
ରବିନ୍ଦ୍ର ଦେବ ଆଦିତ୍ୟକୁ ପଚାରିଲେ, ଯେତେବେଳେ ରକ୍ଷକତାକୁ ଖୋଜିବାକୁ ଗଲେ, ତେବେ ସେ କେଉଁଠାରେ ଥିଲେ ?
ମୁଁ ନିଜ କକ୍ଷରେ ଧାନ କରୁଥିଲି । ତେବେ ରକ୍ଷକ ମତେ କାହିଁକି ଖୋଜିବାକୁ ଗଲେ ?
ମୁଁ କହୁଚି ତୁମେ ନିଜ କକ୍ଷରେ ନ ଥିଲ । କୁହତ, ତୁମେ କେଉଁଠାରେ ଥିଲ ? ରାଜା କେଉଁଠି ଥିଲେ ?
ମୁଁ ଆପଣଙ୍କୁ କହୁଚି, ମୁଁ ତାକୁ ଗୁପ୍ତରେ ରଖିବାକୁ ଶପଥ ନେଇଛି । ମୁଁ ରାଜାଙ୍କୁ ଧୋକା ଦେଇ ପାରିବି ନାହିଁ ।
ତେବେ କଣ ବା ଗୁପ୍ତ ରଖା ଯାଇ ପାରେ ? ଏହା ମୂର୍ଖତା । ମୁଁ ଜାଣେ, ତୁମେ କୌଣସି ପରୋକ୍ଷ ଉଦ୍ଦେଶ୍ୟ ପାଇଁ ତାକୁ ଲୁଚେଇ ରଖିଚ । ସେ ଆମର ରାଜା ଅଟନ୍ତି ।


ରବିନ୍ଦ୍ରଦେବ ଖଣ୍ଡା ନେଇ ଆଦିତ୍ୟକୁ ଆଘାତ କରିବା ପାଇଁ ବାହାରିଲା ।
ମୁଁ ତୁମପରି ଲୋକକୁ ଅକ୍ତିଆର କରିବା ଜାଣେ ।
ବିଜୁଳୀ ବେଗରେ ଆଦିତ୍ୟ ରକ୍ଷକ ହାତରୁ ବର୍ଚ୍ଛା ନେଇ ଚାଲିଗଲା ।
ଖଣ୍ଡା ପିଙ୍ଗିଦିଅ ।
ମତେ ଦୟା କରି ମାର ନାହିଁ ଆଦିତ୍ୟ !
ଆଦିତ୍ୟ ରବିନ୍ଦ୍ରଦେବର ଖଣ୍ଡା ନେଇ ରକ୍ଷକକୁ ଧମ୍‌କାଇଲା । ସେମାନେ ଦୌଡି ପଳାଇଲେ । ଏହାପରେ ଆଦିତ୍ୟ ଭିତରୁ ଦ୍ୱାର ବନ୍ଦ କରିଦେଲା ।


ରବିନ୍ଦ୍ରଦେବ ସ୍ତବ୍ଧ ହୋଇ ରହିଗଲା । ଏହା ଏପରି ଘଟିବ ତାକୁ ଜଣା ନଥିଲା । ସେ ନାଚାର ହୋଇ ବସି ରହିଲା ।
ଦୟା କରି ମତେ ଛାଡି ଦିଅନ୍ତୁ, ଆପଣ ଯାହା କହିବେ, ମୁଁ ତାହା କରିବି ।
ଠିକ୍ ଅଛି, ମୁଁ ଆଜି ତୁମକୁ ଛାଡି ଦେଉଛି । କିନ୍ତୁ ତୁମର ସମୟ ସରିଗଲା । ତୁମର ପିତାଙ୍କୁ କହିବ ରାଜାଙ୍କୁ ବିତାଡିତ କରିବାର ତୁମ ମାନଙ୍କର ଷଡଯନ୍ତ୍ର ପଦାରେ ପଡିଲାଣି ।
ମହଲର ରକ୍ଷକଙ୍କୁ ସାବଧାନ କରି ଦିଆଗଲା । ସେମାନେ ଦ୍ୱାର ଖୋଲି ଆସିବାର ପ୍ରୟାସ କଲେ ।
ରବିନ୍ଦ୍ରଦେବଙ୍କ ମୁହଁ ବନ୍ଦ କରି ଏକ ଚୌକିରେ ବାନ୍ଧି ଦିଆଗଲା ।
ଆଦିତ୍ୟ ହଠାତ୍ ଭିତରକୁ ଯିବା ପାଇଁ ଦ୍ୱାର ଖୋଲିଦେଲା । ଏହାପରେ ସେ ବାହାରୁ ଦ୍ୱାର ବନ୍ଦ କରି ରାଜାଙ୍କୁ ଭେଟିବାକୁ ଚାଲିଗଲା ।


ପାହାଡ ମଧ୍ୟଦେଇ ଦୁଇଦିନ ଯାତ୍ରା କରିବାପରେ ନରେନ୍ଦ୍ରଦେବ ଓ ତାର ଲୋକମାନେ ଏକ ପ୍ରାଚୀନ ମନ୍ଦିର ମଧ୍ୟରେ ଥିବା ଭବନରେ ପହଞ୍ଚିଲେ !
ସେମାନେ ଚକିତ ହୋଇ ଦେଖୁଥିଲେ ଯେ ନାଗବନ୍ଧୁଙ୍କ ଭକ୍ତ ନାଗପଞ୍ଚମୀ ଉତ୍ସବରେ ଯୋଗ ଦେବାପାଇଁ ଭୋଗ ନେଇଯାଉଛି
ତାନ୍ତ୍ରିକର ଜଣେ ଶିଷ୍ୟ ଅପରିଚିତ ଆଗନ୍ତୁକଙ୍କ ପାଖକୁ ଗଲା ।
ତଳକୁ ଓହ୍ଲାଇ ଠିଆ ହୁଅ । ଆମର ଗୁରୁ ଅନୁଶାସନ ସମ୍ପର୍କରେ ବେଶ୍ କଠୋର । ତାଙ୍କର ଆଦେଶ ଆମକୁ ପାଳନ କରିବାକୁ ହେବ ।
କ୍ରମଶଃ




# ଫଟୋ ପରିଚୟ ପ୍ରତିଯୋଗିତା





**ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇଚାରି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।**

ପରିଚୟୋକ୍ତି ସହ ନିଜ ଠିକଣା ପୋଷ୍ଟକାର୍ଡ଼ରେ ଇଂରାଜୀରେ ଲେଖା ନିମ୍ନ ଠିକଣାରେ ପଠାନ୍ତୁ ।
ଚିତ୍ର ପରିଚୟ ପ୍ରତିଯୋଗିତା, ଚାନ୍ଦାମାମା, ପ୍ଲଟ ନଂ-୮୨
ଡିଫେନ୍ସ ଅଫିସର୍ସ କଲୋନୀ, ଇକାଟୁଥାଙ୍ଗଲ, ଚେନ୍ନାଇ- ୬୦୦୦୯୭
ଏପ୍ରିଲ୍ ୨୦ ତାରିଖ ସୁଦ୍ଧା ପରିଚୟୋକ୍ତି ଆମ ପାଖରେ ପହଞ୍ଚିବା ଦରକାର । ସର୍ବଶ୍ରେଷ୍ଠ ପ୍ରତିଯୋଗୀଙ୍କୁ ଶହେଟଙ୍କା ପୁରସ୍କାର ଭାବେ ପ୍ରଦାନ କରାଯିବ ।

## ଶୁଭେଚ୍ଛା

ପୂର୍ବ ସଂଖ୍ୟା ଚିତ୍ର ପ୍ରତିଯୋଗିତାର ବିଜେତା
କୁମାରୀ ଶୁଭସ୍ମିତା ଦାଶ
ମାର୍ଫତ/'ରମାଦେବୀ ନିବାସ'
୩୮, ଶକ୍ତିନଗର
ରାଉରକେଲା-୭୬୯୦୧୪ (ଓଡ଼ିଶା)

**ବିଜୟୀ ପ୍ରତିଯୋଗୀ**





୧ମ ଚିତ୍ର : ଦେଇକୁ ଦେଖି, ମନ ହେଲାଣି ମୋ
ଜେଜେଇ ସାଥୀରେ ଖେଳିବା ପାଇଁ
୨ୟ ଚିତ୍ର : ହଇଲୋ ପିଙ୍କି, କେମିତି ଆଣିବୁ
ଜେଜେଇକୁ ହାତ ପାଉନ ନାହିଁ !

ଜହ୍ନମାମୁ ବାର୍ଷିକ ଦେୟ
ଡାକଯୋଗେ ଟ୧୨୦/-

Payment in favour of CHANDAMAMA INDIA LIMITED
No. 82, Defence Officers Colony, Ekkatuthangal, Chennai - 600 097

Printed and Published by B. Viswanatha Reddi at B.N.K. Press Pvt. Ltd., Chennai - 600 026 on behalf of Chandamama India Limited. No. 82. Defence Officers Colony. Ekkatuthangal. Chennai - 600 097. Editor : Viswam



NOW WITH EVERY CAKE OF
MYSORE SANDAL BABY SOAP,
A SOAP-HOLDER FREE!
Mysore Sandal Baby Soap
Baby
MYSORE SANDAL
BABY SOAP
WITH PURE NATURAL
SANDALWOOD AND
ALMOND OILS
RECOMMENDED BY
SKIN & CHILD
SPECIALISTS
CARES FOR
YOUR BABY
AS MUCH AS
YOU DO!
Mysore Sandal
Baby
Soap
Enriched with sandalwood
and almond oils.
The house of
Mysore Sandal
has been bringing the
goodness of sandalwood
right into your homes for
over 80 years.
*Till stocks last. So hurry!
FOR GREATER CLEANLINESS AND HYGIENE, TURN TO MYSORE SANDAL BABY SOAP.

